# ଜହ୍ନମାମୁଁ - କ୍ୟାମେଲ ରଙ୍ଗ ପ୍ରତିଯୋଗୀତା

## ପ୍ରବେଶିକା ଚାନ୍ଦା ବିହୀନ



ପୁରସ୍କାର ହାସଲ କରନ୍ତୁ ।

କ୍ୟାମେଲ — ୧ମ ପୁରସ୍କାର ଟ ୧୫

କ୍ୟାମେଲ — ୨ୟ ପୁରସ୍କାର ଟ ୧୦

କ୍ୟାମେଲ — ୩ୟ ପୁରସ୍କାର ଟ ୫

କ୍ୟାମେଲ — ୫ ଗୋଟି ସାନ୍ତ୍ୱନା ଦାୟକ ପୁରସ୍କାର

କ୍ୟାମେଲ — ୧୦ ଗୋଟି ପ୍ରମାଣ ପତ୍ର ।

ଛକ ଦିଆଯାଇଥିବା ଗାରର ପାଖ ଦେଇ କାଟନ୍ତୁ ।

ଏଥିରେ କେବଳ ୧୬ ବର୍ଷ ବୟସ ପର୍ଯ୍ୟନ୍ତ ଛାତ୍ରମାନେ ଅଂଶ ଗ୍ରହଣ କରିପାରିବେ । ପୃଷ୍ଠରେ ଥିବା ଛବିକୁ ଯେ କୌଣସି କ୍ୟାମେଲ ରଙ୍ଗରେ ରଙ୍ଗୀନ କରନ୍ତୁ । ଆପଣଙ୍କର ରଙ୍ଗୀନ ଚିତ୍ରକୁ ନିମ୍ନ ଠିକଣାରେ ପଠେଇ ଦିଅନ୍ତୁ । P.B. No. 9928, COLABA, Bombay-400 005.

ଏହାରି ଫଳାଫଳ ଚୂଡାନ୍ତ ଏବଂ ଏଥି ସମ୍ବନ୍ଧୀୟ କୌଣସି ଚିଠିପତ୍ର ବିଚାରକୁ ନିଆଯିବ ନାହିଁ ।

Name. ______________________ Age ______________

Address. ______________________________________

ଆପଣଙ୍କ ନାମ ଓ ଠିକଣା ଇଂରାଜୀରେ ଲେଖନ୍ତୁ

Vision

**CONTEST NO.16**

ଦୟାକରି ସଂପୂର୍ଣ୍ଣ ଚିତ୍ର ପେଣ୍ଟିଂ ହେବାପ୍ରତି ଧ୍ୟାନ ରଖନ୍ତୁ ।

ଏହା ପଠାଇବାର ଶେଷ ତାରିଖ : *30-9-1980*



ସୁରେଶ ପ୍ରୋଡକସନ୍ସ

# ତୋହଫା

(ଇଷ୍ଟମ୍ୟାନ କଲର)

!,;fQJ :

**Q. QIPI IQq_**

:

SQ. Q1g1.q1

ସଙ୍ଗୀତ :

ଲକ୍ଷ୍ମୀକାନ୍ତ ପ୍ୟାରେଲାଲ



# ଜହ୍ନ ମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗିରେଡ୍ଡୀ

ଯେଉଁ ଆତ୍ମା ଗୌତମ ବୁଦ୍ଧ ରୂପେ ପରିଚିତ ହେଲା, ସେ ଆତ୍ମା ପୂର୍ବରୁ ଅନେକ ଜନ୍ମ ଗ୍ରହଣ କରିଥିଲା । ବୁଦ୍ଧଙ୍କର ସେହି ପୂର୍ବଜନ୍ମ ସମୂହର ଘଟଣାବଳି ବୁଦ୍ଧଜାତକ ନାମରେ ଖ୍ୟାତ । ବୁଦ୍ଧଙ୍କ ଆତ୍ମା ସେସବୁ କାହାଣୀରେ ବୋଧିସତ୍ତ୍ୱ ନାମରେ ବିଦିତ । ଏହି ସଂଖ୍ୟାରୁ ପରିବେଷିତ ହେଉଛି ଜାତକ କାହାଣୀମାଳା ।



## ଅମରବାଣୀ

ଅସଜ୍ଜନେନ ସମ୍ପର୍କାଦନୟଂ ଯାନ୍ତି ସାଧବଃ ।
ମଧୁରଂ ଶୀତଳଂ ତୋୟଂ ପାବକଂ ପ୍ରାପ୍ୟ ନିର୍ଗୁଣମ୍ ॥

ଖରାପ ଲୋକ ସମ୍ପର୍କରେ ଆସି ସାଧୁ ଲୋକଟିଏ ନୀତିଚ୍ୟୁତ ହୋଇପାରେ—ନିଆଁ ସମ୍ପର୍କରେ ଆସି ମଧୁର ଥଣ୍ଡା ଜଳ ଯେପରି ତା' ଗୁଣ ହରାଏ ।

ବର୍ଷ : ୧୪ ସେପ୍ଟେମ୍ବର ୧୯୮୦ ଅଙ୍କ : ୩

ପ୍ରତିସଂଖ୍ୟା ଟ୧.୫୦ ବାର୍ଷିକ ମୂଲ୍ୟ : ଟ୧୮.୦୦






**ପ୍ରଶ୍ନ : ବେଦାନ୍ତ ତଥା ଉପନିଷଦ ସମ୍ପର୍କରେ କିଛି ସଂକ୍ଷିପ୍ତ ସୂଚନା ଦେଇ ପାରିବେ କି ?**

ଉତ୍ତର : ଉପନିଷଦ୍ ସମୂହର ଯାହା ତତ୍ତ୍ୱ ଓ ଦର୍ଶନ, ତାକୁ ବେଦାନ୍ତ ବୋଲି କୁହାଯାଏ । ବେଦାନ୍ତର ଆକ୍ଷରିକ ଅର୍ଥ ଉତ୍ତର-ବୈଦିକ ରଚନା । ବେଦ ପରେ ଯେ ଉପନିଷଦ୍‌ମାନ ରଚିତ ହୋଇଥିଲେ, ସେଥିରେ ସନ୍ଦେହ ନାହିଁ । ଯେଉଁମାନେ ଉପନିଷଦ୍‌କୁ ବେଦାନ୍ତ ବୋଲି ଅଭିହିତ କଲେ, ସେମାନେ ବେଦ ଅଧ୍ୟୟନ ପରେ ଉପନିଷଦ୍ ମଧ୍ୟ ପଠିତ ହେବା ଆବଶ୍ୟକ, ବୋଧ ହୁଏ ଏହି କଥା ସୂଚାଇବାକୁ ଚାହୁଁଥିଲେ ।

କେତେକ ଉପନିଷଦ୍ ପୁଣି ବେଦ ସହ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଉଦାହରଣ ସ୍ୱରୂପ ଐତରେୟ ଏବଂ କୌଶିତକି ଋକ୍‌ବେଦ ସହ, ଛାନ୍ଦୋଗ୍ୟ ଏବଂ କେନୋପନିଷଦ୍ ଯୋଡ଼ିକ ସାମ ବେଦ ସହ, ଏବଂ ତୈତ୍ତିରୀୟ, କଠ, ଶ୍ୱେତାଶ୍ୱତର, ବୃହଦାରଣ୍ୟକ, ଈଶ, ପ୍ରଶ୍ନ, ମାଣ୍ଡୁକ୍ୟ ଏବଂ ମୁଣ୍ଡକ ଉପନିଷଦ୍‌ମାନ ଯଜୁର୍ବେଦ ସହ ଜଡ଼ିତ ।

ଉପନିଷଦ୍‌ମାନଙ୍କରେ ଆମେ ପାଇଥାଉ ନଚିକେତାଙ୍କ ଭଳି ମହନୀୟ କିଶୋର ଚରିତମାନଙ୍କର ବିବରଣୀ । ସେମାନଙ୍କ କାହାଣୀମାନଙ୍କରେ ନିହିତ ଗୂଢ଼ ଅର୍ଥ ରହିଥାଏ ।

ଉପନିଷଦ୍ ସମୂହର ସଂଖ୍ୟା ଏକ ଶହ ଆଠ । ସେଥିରୁ ଅଧିକାଂଶ ବିଗତ ଯୁଗର ମହାଜ୍ଞାନୀ ଋଷିମାନଙ୍କ ଦ୍ୱାରା ରଚିତ ।

ମୁଖ୍ୟତଃ ଗଦ୍ୟରେ ଲେଖା ହୋଇଥିଲେ ମଧ୍ୟ ଉପନିଷଦ୍‌ମାନଙ୍କରେ ଉଲ୍ଲେଖଯୋଗ୍ୟ ପରିମାଣରେ କାବ୍ୟସମ୍ପଦ ରହିଛି । ପ୍ରଧାନ ଉପନିଷଦ୍‌ମାନଙ୍କରେ ଦାର୍ଶନିକ ତଥା ଆଧ୍ୟାତ୍ମିକ ତତ୍ତ୍ୱ ସହ କାବ୍ୟିକ ଅଭିବ୍ୟକ୍ତିର ସୁନ୍ଦର ସମନ୍ୱୟ ପରିଲକ୍ଷିତ ହୋଇଥାଏ ।

ବେଦରେ ଯାହା କୁହାଯାଇଛି ସେସବୁ ଅତି ସଂକ୍ଷେପରେ ଏବଂ ରହସ୍ୟମୟ ଭାଷାରେ କୁହାଯାଇଛି, ସେସବୁକୁ ଉପନିଷଦ୍‌ମାନଙ୍କରେ ଦିଆଯାଇଛି ଅଧିକ ବିସ୍ତୃତ ରୂପ । କାହାଣୀ ମାଧ୍ୟମରେ ନିଗୂଢ଼ ତତ୍ତ୍ୱକଥାର ବ୍ୟାଖ୍ୟା ମଧ୍ୟ ଦିଆଯାଇଛି ।




## ପରଧର୍ମ ଭୟାବହ

ପୁଣ୍ୟତୀର୍ଥ ବାରାଣସୀ ନଗରୀରେ କର୍ପୂର-ବଟକ ନାମକ ଧୋବା ବାସ କରୁଥିଲା । ତା'ର ଥିଲେ ଗୋଟିଏ କୁକୁର ଏବଂ ଗୋଟିଏ ଗଧ ।

ଦିନେ କର୍ପୂରବଟକ କ୍ଳାନ୍ତ ହୋଇ ଗାଢ଼ ନିଦରେ ଶୋଇପଡ଼ିଥାଏ । ଓର ଉଣ୍ଡି ଗୋଟାଏ ଚୋର ତା' ଘର ଭିତରେ ପଶିଲା ।

ଚୋରକୁ ଦେଖି ଗଧ କୁକୁରକୁ କହିଲା, "କହୋ ! ତୁମେ ଚକା ପାର ଶୋଇଛ କ'ଣ ? ଉଠିପଡ଼ ଭୁକ ! ନ ହେଲେ ଚୋର ସବୁ ନେଇ ପଳାଇବ ଯେ !"

କୁକୁର ଉଠି ଠିଆ ହେଲା । କିନ୍ତୁ ଭୁକିବା ପରିବର୍ତ୍ତେ ହାଇ ମାରି କହିଲା, "ନେଲେ ନେଉ !"

ଗଧ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ବର୍ତ୍ତମାନ ଭୁକି ମାଲିକକୁ ନିଦରୁ ଉଠାଇଦେବା ତୁମ କର୍ତ୍ତବ୍ୟ ନୁହେଁ ?"

"ଚୋପ୍ ! ମୋ କର୍ତ୍ତବ୍ୟ ସମ୍ପର୍କରେ ତୁ ମୋତେ ଉପଦେଶ ଦେବାକୁ କିଏ ? ଦିନ ଥିଲା, ଯେତେବେଳେ ମାଲିକ ମୋର ବହୁତ ଯତ୍ନ ନେଉଥିଲା । ଭଲ ଭାବରେ ଖିଆପିଆ କରାଉ-ଥିଲା । କିନ୍ତୁ ତା'ର ଟଙ୍କାପଇସା ବେଶୀ ହେବା ଦିନରୁ ସେ ମୋତେ ପଚାରେ ନାହିଁ । ଭଲ ଭାବରେ ମୁଠିଏ ଖାଇବାକୁ ଦିଏ ନାହିଁ । ଥରେ ଚୋରି ହୋଇଯାଉ । ତେଣିକି ସେ ପୁଣି ମୋର ମୂଲ୍ୟ ବୁଝିବ ।" କୁକୁର କହିଲା ।

"କୁକୁର ! ତୁମ ମନୋବୃତ୍ତି ମୋଟେ ସମ-ର୍ଥନଯୋଗ୍ୟ ନୁହେଁ । ଯିଏ ନିଜ କର୍ତ୍ତବ୍ୟପାଳନ କରିବାର ସମୟ ଆସିବା ବେଳେ ନିଜ ସ୍ୱାର୍ଥ

କଥା ଚିନ୍ତା କରେ, ସେ ସଚ୍ଚା ସେବକ ନୁହେଁ କି ମିତ୍ର ନୁହେଁ !" ଗଧ ଶୁଣାଇଦେଲା ।

"ଯିଏ ସେବକକୁ ଭଲ ଭାବରେ ଖାଇବାକୁ ଦିଏ ନାହିଁ, ସେ କଦାପି ସଚ୍ଚା ମାଲିକ ନୁହେଁ !" କୁକୁର ଜବାବ ଦେଲା ।

"ଛିଃ, ତୁ ଏଡ଼େ ଅଧମ ବୋଲି ମୁଁ ଜାଣି ନ ଥିଲି । ତୋତେ ନର୍କ ଛଡ଼ା ଅନ୍ୟ କେଉଁଠି ସ୍ଥାନ ମିଳିବ ନାହିଁ । ତୁ ଯାହା କରୁଛୁ କର, ମୁଁ ବର୍ତ୍ତମାନ ମାଲିକକୁ ଜଗାଇଦେବାର ପ୍ରଯତ୍ନ କରିବି ।" ଏହା କହି ଗଧ ପ୍ରବଳ ଭାବରେ ରଡ଼ି ଛାଡ଼ିବାକୁ ଲାଗିଲା ଓ ଗୋଡ଼ କଚାଡ଼ିଲା ।

ଚୋର ସେଥିରେ ଚମକିଯାଇ ପଳାଇଗଲା । କିନ୍ତୁ ମାଲିକ ଗଧର ସେ ବିଚିତ୍ର ବ୍ୟବହାରରେ ବିରକ୍ତ ହୋଇ, ବିଶେଷତଃ ତା' ନିଦରେ ବ୍ୟାଘାତ ଘଟିବାରୁ, ଗଧକୁ ବେଦମ୍ ପିଟିଲା ।

ସଦୁଦ୍ଦେଶ୍ୟ ସତ୍ତ୍ୱେ କୁକୁରର ଭୂମିକା ତୁଲାଇବାକୁ ଯାଇ ଗଧ ବିଚରା ଏ ଦୁଃଖ ଭୋଗ କଲା !

## ରାଜପଦ-ଲୋଭୀ ହାତୀ

ଗୋଟିଏ ଅରଣ୍ୟରେ ରହୁଥିଲା ହୃଷ୍ଟପୁଷ୍ଟ ହାତୀଟିଏ । ଦିନେ ସେ ଗୋଟାଏ ବୁଦା ପାଖଦେଇ ଗଲା ବେଳେ ଦଳେ ଶିଆଳ ତାକୁ ଦେଖିଲେ । କେତେକ ଶିଆଳ କହିଲେ, "ହାତୀ ମାଂସ ଆମେ କେବେ ଖାଇନାହୁଁ । କିନ୍ତୁ ସେ ଆଶା କରି ଲାଭ କ'ଣ ?"

ବୁଢ଼ା ଶିଆଳଟିଏ କହିଲା, "ତୁମମାନଙ୍କ ଆଶା ମୁଁ ପୂରଣ କରିବି ।" ଏଥି ଅନ୍ତେ ସେ ହାତୀ ଆଗକୁ ଯାଇ କହିଲା, "ଜୁହାର ଆଜ୍ଞା !"

"ତୁ କିଏ ?" ହାତୀ ପଚାରିଲା ।

"ମୁଁ ଏ ବଣର ପଶୁକୁଳର ଦୂତ । ସମସ୍ତଙ୍କ



ତରଫରୁ ଆପଣଙ୍କୁ ଭେଟିବାକୁ ଆସିଛୁ ।" ବୁଢ଼ା ଶିଆଳ ଜଣାଇଲା ।

"ମୋତେ ଭେଟିବାର ଉଦ୍ଦେଶ୍ୟ ?" ହାତୀ ପଚାରିଲା ।

"ଆଜ୍ଞା, ଆମର ଏ ବଣରେ ରଜା ନାହାନ୍ତି । ବିନା ରଜାରେ ଆମର ଶାନ୍ତି ନାହିଁ । ବଣସାରା ବିଶୃଙ୍ଖଳା । ଆମେ ପଶୁମାନେ ଏକତ୍ର ହୋଇ ଦେଖିଲୁ, ଏପରିକି ଘରସଂସାର କରିବା ପୂର୍ବରୁ ରଜାଟିଏ ବରଣ କରିବା ଦରକାର । ରଜା ନ ଥିଲେ ଆମ ଘରସଂସାର ନିରାପଦରେ ଚାଲିବ କିପରି ? ସମସ୍ତଙ୍କ ମତ, ଆପଣହିଁ ଆମର ରଜା ହେବେ । ସମସ୍ତ ରାଜୋଚିତ ଲକ୍ଷଣ ଆପଣଙ୍କ ଗାତ୍ରରେ ବିଦ୍ୟମାନ ।" ବୁଢ଼ା ଶିଆଳ ନମ୍ର କଣ୍ଠରେ କହିଲା ।

ହାତୀ ଖୁସୀ ହୋଇଗଲା । କିନ୍ତୁ କହିଲା, "ଧୈର୍ଯ୍ୟ ଧର । ଆରପାଖ ବଣରେ ମୋ ଗୁରୁଜନମାନେ ଅଛନ୍ତି । ସେମାନଙ୍କୁ ଥରେ ପଚାରି ଆସେ ।"

"ମହିମା ! କୌଣସି ଗୁରୁଜନ କ'ଣ ଆପଣଙ୍କ ସୌଭାଗ୍ୟକୁ ନାପସନ୍ଦ କରିବ ? ବର୍ତ୍ତମାନ ଅଭିଷେକ ପାଇଁ ଶୁଭ ମୁହୂର୍ତ୍ତ । ସବୁ ପଶୁ ଅପେକ୍ଷା କରିଛନ୍ତି । ଅଭିଷେକ ହୋଇଯାଉ । ତା'ପରେ ଶୋଭାଯାତ୍ରାରେ ଆମେ ଆପଣଙ୍କୁ ନେଇଯିବୁ । ଗୁରୁଜନମାନଙ୍କ ପାଖରୁ ଆଶୀର୍ବାଦ ଆଣିବେ ।" ବୁଢ଼ା ଶିଆଳ କହିଲା ।

ଏ କଥା ହାତୀ ମନକୁ ପାଇଲା । ସେ ଶିଆଳକୁ ଅନୁସରଣ କଲା । ଶିଆଳ ତାକୁ ଗୋଟାଏ ଦଳଭର୍ତ୍ତି ପୋଖରୀ ପାଖକୁ ନେଇଗଲା । ଦଳ ଯୋଗୁ ତାହା ଗୋଟାଏ ପଡ଼ିଆ ପରି ଦିଶୁଥାଏ । ଶିଆଳ କଡ଼େ କଡ଼େ ଚାଲିଲା । କିନ୍ତୁ ହାତୀ



ବୁଝି ନ ପାରି ଦଳ ଭିତରକୁ ପଶିଗଲି । କାଦୁଅରେ ତା' ଗୋଡ଼ ଅଟକି ରହିଲା ।

"ଦୂତପ୍ରବର ! ମୁଁ ତ କ'ଣ କାଦୁଅରୁ ଉଠି ପାରୁନାହିଁ !" ହାତୀ କହିଲା ।

"ମୁଁ କ'ଣ କରିବି ? ମୋ ଲାଞ୍ଜ ଧରି ତ ଆଉ ଉଠି ପାରିବ ନାହିଁ ? ତୁମେ ଭୁଲ କଲ । ମୋ ଭଳି ଶିଆଳ କଥାରେ ତୁମେ ଭୁଲିଯିବା ଠିକ୍ ହେଲା ନାହିଁ । ମହତ ସହ ମିତ୍ରତା କଲେ ଉନ୍ନତି ହୁଏ, ନୀଚ ସହ ମିତ୍ରତା କଲେ ସର୍ବନାଶ ହୁଏ । ଏ କଥା ଜ୍ଞାନୀମାନେ କହିଛନ୍ତି ।" ଶିଆଳ ଏହା କହି ଅନ୍ୟ ଶିଆଳମାନଙ୍କୁ ଡାକିଆଣିବାକୁ ଗଲା । ହାତୀ ଛନ୍ଦହୋଇ ମଲା ଓ ଶିଆଳମାନଙ୍କ ଆହାର ହେଲା ।

## ମାର୍ଜାରର ଗର୍ବ

ଆରାବଳୀ ପାହାଡ଼ର ପାଦଦେଶରେ ରହୁଥାଏ ଏକ ସିଂହ । ଦୁଷ୍ଟ ମୂଷାଟିଏ ତା' ପିଠି ଉପରକୁ ଚଢ଼ିଯାଇ ତା' କେଶର କାଟିପକାଉଥାଏ । ସେ ଖୁବ୍ ବିରକ୍ତ ହେଉଥାଏ । କିନ୍ତୁ କିଛି କରିପାରୁନଥାଏ ।

ସିଂହ ଦିନେ ଗୋଟାଏ ବିଲେଇକୁ ନିମନ୍ତ୍ରଣ କଲା ତା' ନିଜ ପାଖରେ ରହିବା ପାଇଁ । ସିଂହ ଯାହା ଶିକାର କରେ, ସେଥିରୁ ବିଲେଇକୁ ଅଂଶ ଦିଏ । ବିଲେଇର ଗର୍ବ କହିଲେ ନ ସରେ । "ସିଂହ ମୋର ପରମ ମିତ୍ର !" ସେ ଗର୍ବ କରି ଦୂରରୁ ତାକୁ ଲକ୍ଷ୍ୟ କରିବାକୁ ଆସୁଥିବା ଛୋଟ ଛୋଟ ଜୀବମାନଙ୍କୁ କୁହେ ।

ବିଲେଇ ଯୋଗୁ ମୂଷା ତା' ବିଳରୁ ବାହାରେ ନାହିଁ । କିନ୍ତୁ ସୁରପାଞ୍ଚଦିନ ଭୋକିଲା ରହି ଆଉ ସମ୍ଭାଳି ନ ପାରି ମୂଷା ଦିନେ ବିଳରୁ ବାହାରିଆସିଲା । ସଙ୍ଗେ ସଙ୍ଗେ ବିଲେଇ ତାକୁ ମାରିଦେଲା ।

ସିଂହ ତାହା ଦେଖି ବିଲେଇକୁ କହିଲା, "ଏଥର ଚାଲିଯାଇପାର । ସାମାନ୍ୟ ବିଲେଇ ସହ ସିଂହର ମିତ୍ରତା ଶୋଭା ପାଏ ନାହିଁ !"






[ ୩ ]

[କୁଣ୍ଡଳିନୀ ଦ୍ୱୀପର ସ୍ୱଦେଶଗାମୀ ଜାହାଜମାନ ପ୍ରବଳ ତୋଫାନରେ ଛନ୍‌ଛତ୍ର ହୋଇଗଲେ । ସେନାପତି ସମରସେନ ସେମାନଙ୍କୁ ଏକତ୍ର କରି ଗୋଟିଏ ଅଜଣା ଦ୍ୱୀପ ପାଖରେ ସେମାନଙ୍କୁ ରଖାଇ କେତେଜଣମାତ୍ର ସୈନିକଙ୍କୁ ଧରି ନିଜେ ସେ ଦ୍ୱୀପରେ ପହଞ୍ଚିଲେ । ସେଠାରେ ସେ ଦେଖିଲେ ଯୁଦ୍ଧରତ କେତେକ ବିଚିତ୍ର ଜନ୍ତୁଜାନୁଆର । ଭୟଭୀତ ହୋଇ ସେମାନେ ଗଛ ଉପରେ ଚଢ଼ି ବସିଲେ । ତା'ପରେ…]

ସମରସେନ ତଥା ତାଙ୍କ ସୈନ୍ୟମାନେ ଗଛ ଆଢ଼ୁଆଳରେ ଥାଇ ସେ ବିଚିତ୍ର ଜୀବମାନଙ୍କ ଲଢ଼େଇ ଲକ୍ଷ୍ୟ କରୁଥାନ୍ତି । ସିଂହ କବଳରୁ ବଞ୍ଚିବା ନିମନ୍ତେ ହାତୀଟିଏ ନାନା ପ୍ରକାର ଚେଷ୍ଟା କରୁଥାଏ । ସେଠାର ବଣବୁଦା ଚୂର୍‌ମାର୍ ହୋଇଯାଉଥାଏ ।

ଜଣେ ସୈନିକ ସମରସେନଙ୍କୁ କହିଲା, "ସେନାପତି ମହୋଦୟ ! ଆମେ ବଡ଼ ଅଡୁଆ ପରିସ୍ଥିତିରେ ପଡ଼ିଯାଇଛୁ । ଏ ଦ୍ୱୀପରୁ ଆମକୁ ମିଳିବ କ'ଣ ? ଏଠାରେ ସମ୍ପତ୍ତି କାହିଁ ଆସିବ ଯେ ଆମେ ନେଇଯିବୁ ?"

ଅନ୍ୟ ଜଣେ ସୈନିକ କହିଲା, "ତୁମେ ସମ୍ପତ୍ତି କଥା ଆହୁରି ଭାବିପାରୁଛ ? ଏଠାରୁ ପ୍ରାଣ ରୂପକ ସମ୍ପତ୍ତି ଧରି କୌଣସି ପ୍ରକାରେ ସ୍ୱ-




ଦେଶକୁ ପଳାଇଯାଇ ପାରିଲେ ରକ୍ଷା !"

ସମରସେନ ମଧ୍ୟ ଗମ୍ଭୀର ଚିନ୍ତାରେ ବୁଡ଼ି ରହିଥିଲେ । କୌଣସି ସମୃଦ୍ଧ ନଗରୀ ଉପରେ ଚଢ଼ାଉ କରି ଧନ-ସମ୍ପଦ ନେଇ ନିଜ ରାଜାଙ୍କୁ ଦେବା ଉଦ୍ଦେଶ୍ୟରେ ସେମାନେ ବାହାରି ଆସିଥିଲେ । କିନ୍ତୁ ଆସି ପହଞ୍ଚିଲେ ଗୋଟାଏ ଜନହୀନ ଦ୍ୱୀପରେ । କାହିଁ ସମ୍ପତ୍ତିର ସ୍ୱପ୍ନ, କାହିଁ ଏ ଦୟନୀୟ ଅବସ୍ଥା ! କେଡ଼େ ଦୁର୍ଭାଗ୍ୟ ବାସ୍ତବିକ !

ସମରସେନଙ୍କ ଚିନ୍ତାରେ ହଠାତ୍ ବ୍ୟାଘାତ ଘଟିଲା । ସାରା ଜଙ୍ଗଲ ପ୍ରକମ୍ପିତ କରି ଗୋଟାଏ ହୁଙ୍କାର ଶୁଭିଲା, "ଆରେ କାଳ-ଭୁଜଙ୍ଗ ! ହେ କଙ୍କାଳ, ଆସ । ଯଥାଶୀଘ୍ର ଚଳୁର୍ନେଶକୁ ଧରି-ଆଣି ତାକୁ ବଧ କର ।"

ସେ ହୁଙ୍କାର ଶୁଣି ସମରସେନଙ୍କର ମନେ ହେଲା ତାଙ୍କ ହୃଦ୍‌ଯନ୍ତ୍ର ଅବା ବନ୍ଦ ହୋଇଯିବ । ତାଙ୍କ ସୈନିକମାନେ ଗୋଟାପଣେ ଥରୁଥାନ୍ତି । ସେ ପ୍ରଚଣ୍ଡ କଣ୍ଠସ୍ୱରରେ ତଳେ ସରୋବର ପାଖରେ ଲଢ଼େଇ କରୁଥିବା ଜାନୁଆରମାନେ ଏବଂ ଗଛ ଚଢ଼ି ବସିଥିବା ନରବାନରମାନେ ଏଣେତେଣେ ଦୌଡ଼ି ପଳାଇଲେ ।

ଦେଖୁଁ ଦେଖୁଁ ସେ ସରୋବର ତୀରରେ ଏକ ଭୀଷଣ-ଦର୍ଶନ ଜୀବ ଆସି ଉଭା ହେଲା । ସେ ଦିଶୁଥାଏ ଗଛ ଭଳି ଉଚ୍ଚ । ତା'ର ଗୋଟାଏ

ଆଖି କଣା । ତା' ଗୋଡ଼ରେ ଛନ୍ଦ ହୋଇ ରହିଥାଏ ଗୋଟାଏ କଳା ସାପ । ତା' ମୁଣ୍ଡ ଉପରେ ଗୋଟାଏ ମଣିଷ ଖପୁରି ଉଡ଼ ଉଡ଼ ବୁଲୁଥାଏ ।




ସେହି ଭୀଷଣକାୟ ଜୀବ ଥରେ ଚାରିଆଡ଼କୁ ଅନାଇସାରି ମୁଣ୍ଡ ହଲାଇ ଏହି ହୁଙ୍କାର ଦେଲା : "ଯାଦୁଦ୍ୱୀପ ! ଅଦ୍ଭୁତ ଟାପୁ ! ଗୋବରୁ ପାହାଡ଼ ! ଆରେ ଖପୁରି, ତୁ କ'ଣ କ'ଣ ଦେଖିପାରୁଛୁ ?"

ସେ ଖପୁରି ବିକଟ ଅଟ୍ଟହାସ୍ୟ କରି କହିଲା, ଦେଖୁଛି, ସମୁଦ୍ର ମଧ୍ୟରେ ଦୋହଲୁହେଉଛି ବୋଇତ । ବୋଇତ ଭିତରେ ଅମାପ ଧନ । ବୋଇତ ବାହାରେ ତାକୁ ପହରା ଦେଉଛି ଏକ ନାଗକନ୍ୟା । ସେ ନାଗକନ୍ୟାକୁ ମାରିପାରିଲେହିଁ ହେଲା । ବୋଇତର ସବୁ ଧନ ଆମର ହୋଇ-ଯିବ ।"

"ବେଶ୍, ବେଶ୍, ଆମେ ସେତକ କରି-ପାରିଲେ ହେଲା । ସବୁ ଧନ ଆମର ହୋଇଯିବ । ମନେରଖ—ସେ ଚତୁର୍ନେତ୍ର କଥା !" ଏହା କହି ସେହି ଏକଚକ୍ଷୁ ଜୀବ ଗୋଟାଏ ହୁଙ୍କାର ଛାଡ଼ିଲା ।

ଗଛଡାଳରେ ବସିଥାଇ ସେ କଥା ଓ ହୁଙ୍କାର ଶୁଣୁଥିବା ସମରସେନ ବୁଝିଲେ କି ସେ ଗୋଟାଏ ମନ୍ତ୍ର ଦ୍ୱୀପରେ ଆସି ପହଞ୍ଚିଛନ୍ତି । ସେଠାରୁ ଅଦୂରରେ ସମୁଦ୍ର ଉପରେ ଧନପୂର୍ଣ୍ଣ ବୋଇତ ଦେଖାଯାଉଛି ।

କିନ୍ତୁ ସେ ଚତୁର୍ନେତ୍ର କିଏ ? ଏହି ଭୀଷଣା-କୃତି ଏକଚକ୍ଷୁ ଏବଂ ସେ ଚତୁର୍ନେତ୍ର ଭିତରେ ବିବାଦର ହେତୁ କ'ଣ ? ସେହି ଧନରାଶିପୂର୍ଣ୍ଣ ବୋଇତ ନୁହେଁ ତ ? ନା ଏକାଧିକ କାରଣ ରହିଛି ?

ସମରସେନ ଏଇ ଚିନ୍ତା କରୁଥା'ନ୍ତି, ମାନ୍ତ୍ରିକ ସରୋବର କୂଳରୁ ବଣ ଭିତରକୁ ଚାଲିଗଲା । ତା' ସଙ୍ଗେସଙ୍ଗେ କଳା ସାପ ଓ ସେ କପାଳ ମଧ୍ୟ ଚାଲିଗଲେ ।

ଗଛ ଉପରେ ବସି ଥିବା ସୈନିକମାନେ




ଏକଚକ୍ଷୁ ମାନ୍ତ୍ରିକ ଚାଲିଯିବାର ଦେଖି ଟିକିଏ ଆଶ୍ୱସ୍ତ ଅନୁଭବ କଲେ । ସେମାନେ ସମରସେନଙ୍କ ଆଡ଼କୁ ଅନାଇଲେ । ସମସ୍ତଙ୍କ ମୁଖମଣ୍ଡଳରେ ଭୟ ପ୍ରକଟିତ ହେଉଥାଏ ।

ଜଣେ ସୈନିକ କହିଲା, "ଏହି ଏକଚକ୍ଷୁ ଜଣକ ଗୋଟାଏ ବିଶିଷ୍ଟ ମାନ୍ତ୍ରିକ ବୋଲି ମନେହୁଏ । ତାକୁ ଅନୁସରଣ କରୁଥିବା ସେ କାଳସର୍ପ ଓ ମାନବ-କପାଳକୁ ଦେଖିଲେ ସବୁଠାରୁ ସାହାସୀ ଲୋକ ମଧ୍ୟ ଡରିଯିବ । ଆଜ୍ଞା, ଯେତେ ଶୀଘ୍ର ଆମେ ଏ ଦ୍ୱୀପରୁ ପଳାଇଯାଇପାରିବା, ସେତେ ମଙ୍ଗଳ ।"

ସୈନିକମାନେ ଉଦ୍‌ଗ୍ରୀବ ଭାବରେ ସେନାପତିଙ୍କ ପ୍ରତିକ୍ରିୟା କ'ଣ ହେବ, ତାହା ଶୁଣିବାକୁ ଅପେକ୍ଷା କଲେ । ସମରସେନ ଚିନ୍ତାମଗ୍ନ ହୋଇ ବସିଥାନ୍ତି । ତା'ପରେ ସେ ମୁଣ୍ଡ ହଲାଇ କହିଲେ, "ଦେଖ, ଏଇ ଭୟଙ୍କର ଦ୍ୱୀପରେ ମଧ୍ୟ ଧନ ସମ୍ପଦ ମିଳିଯିବାର ସମ୍ଭାବନା ରହିଛି । ତେବେ ପ୍ରୟୋଜନ ଧୈର୍ଯ୍ୟ ଓ କଷ୍ଟସହିଷ୍ଣୁତା ।"

ଏହା କହି ସେନାପତି ସମରସେନ ସୈନିକମାନଙ୍କ ଉତ୍ତରକୁ ଅପେକ୍ଷା ନ କରି ଚୁପ୍‌ଚାପ୍ ଗଛରୁ ଓହ୍ଲାଇପଡ଼ିଲେ । ସୈନିକମାନେ ସେ ଆଉ କ'ଣ କହିବେ, ତାହା ଶୁଣିବାକୁ ଅପେକ୍ଷା କରିଥାନ୍ତି । ସମସ୍ତେ ଦ୍ୱୀପ ଛାଡ଼ି ପଳାଇବା ସପକ୍ଷରେ । କିନ୍ତୁ ସେନାପତି ହେଲେ ସେମାନଙ୍କ ନେତା । ତାଙ୍କ ଇଚ୍ଛା ବିରୁଦ୍ଧରେ ଯିବା ସମ୍ପୂର୍ଣ୍ଣ ଗର୍ହିତ ବୋଲି ସଭିଏଁ ବୁଝିଥିଲେ ।

ସମରସେନ ସବୁ ସୈନିକଙ୍କୁ ଥରେ ତୀକ୍ଷ୍ଣ ଦୃଷ୍ଟିରେ ଦେଖିନେଇ କହିଲେ, "ତୁମ୍ଭେମାନେ ଗୋବରୁ ପାହାଡ଼ କଥା ଶୁଣିଲଣି ? ସେ ପାହାଡ଼ କଡ଼ରେ ଥିବା ଶିଳାକୁ ଯଦି ହଟାଇ ପାରିବୁ, ତେବେ ଆମର ଏଠାକୁ ଆସିବା ସାର୍ଥକ ହେଲା ବୋଲି ଜାଣିବାକୁ ହେବ ।"

ଜଣେ ସୈନିକ ଆଶଙ୍କା ପ୍ରକାଶ କରି କହିଲା, "ଆପଣ ସେ ଏକଚକ୍ଷୁ ମାନ୍ତ୍ରିକ କଥା ସତ ବୋଲି ଭାବୁଛନ୍ତି ?"

ସମରସେନ ଦୃଢ଼ କଣ୍ଠରେ କହିଲେ, "ତା' କଥା ଓ ସେ ମାନବ-କପାଳ ଦେବା ଉତ୍ତରକୁ ଅସତ୍ୟ ବୋଲି ଭାବିବାର କାରଣ ତ କିଛି ଦେଖୁନାହିଁ ! ମୁଁ ଯାହା ବୁଝୁଛି, ଗୋଟିଏ ଧନଭର୍ତ୍ତି ବୋଇତକୁ ନାଗକନ୍ୟାଟିଏ ପହରା ଦେଉଛି । ଯେଉଁ ଏକଚକ୍ଷୁ ମାନ୍ତ୍ରିକକୁ ଦେଖିଲୁ, ଚତୁର୍ନେତ୍ର ନାମକ ଅନ୍ୟ ଜଣେ ମାନ୍ତ୍ରିକ ତା'ର ପ୍ରବଳ ଶତ୍ରୁ । ସବୁ ପ୍ରତିବନ୍ଧକ ଅତିକ୍ରମ କରି କୌଣସି ମତେ ଆମେ ଯଦି ସେ ଧନଭର୍ତ୍ତି ବୋଇତ ଅଧିକାର କରିନେଇ ପାରିବା, ତେବେ ଆମ ଉଦ୍ଦେଶ୍ୟ ସଫଳ ହେବ ।"

ସୈନିକମାନେ ସେନାପତିଙ୍କ କଥା ପ୍ରତି କୌଣସି ଉତ୍ସାହ ଦେଖାଇଲେ ନାହିଁ । ଅବଶ୍ୟ ତାଙ୍କ କଳ୍ପନାକୁ ହାସ୍ୟକର ବୋଲି କହିବାର ସାହସ କାହାରି ନ ଥିଲା । ତେଣୁ ସେମାନେ ନିଜ ନିଜର ହତାଶା ଓ ଆତଙ୍କକୁ ନିଜ ନିଜ ଭିତରେ ଲୁଚିରଖିଲେ ।

ସମରସେନ ଅଗ୍ରସର ହେବାକୁ ଲାଗିଲେ । ଅନିଚ୍ଛା ସତ୍ତ୍ୱେ ସୈନିକମାନେ ତାଙ୍କୁ ଅନୁସରଣ କଲେ । ସେମାନେ ଅଳ୍ପଦୂର ମାତ୍ର ଆଗେଇ ଯାଇଛନ୍ତି, ହଠାତ୍ ଗୋଟାଏ କାନଫଟା ଗର୍ଜନ ଶୁଭିଲା ।

ସମରସେନ ବିସ୍ମିତ ହୋଇ ସେ ଗର୍ଜନ କେଉଁ ଦିଗରୁ ଆସିଲା, ତାହା ଠଉରାଇବାକୁ






ସେମାନଙ୍କୁ ଆହୁରି ବିସ୍ମୟ କଲାଭଳି ଏକ ଦୃଶ୍ୟ ସେତିକିବେଳେ ଦେଖାଗଲା । ଗୋଟାଏ ଜୀବ ଗଛଡାଳରୁ ତଳକୁ କୁଦିପଡ଼ିଲା । ସେ ଅଧା ମଣିଷ, ଅଧା ବାନର । ସେହି ନରବାନର କାନ୍ଧ ଉପରେ ବସିପଡ଼ି କୃଷ୍ଣକାୟ ପେଚା ତା' କାନରେ କ'ଣ ଚୁପ୍‌ଚୁପ୍ କହିଲା ।

ନରବାନର ସେନାପତି ଓ ତାଙ୍କ ସୈନିକ-ମାନଙ୍କ ଆଡ଼କୁ ଦୃଷ୍ଟିପାତ କରି ପୁଣି ଗଛ ଚଢ଼ିଗଲା । ଗଛରୁ ଗଛକୁ ଡେଇଁ ସେ ମୁହୂର୍ତ୍ତକ ମଧ୍ୟରେ ଅଦୃଶ୍ୟ ହୋଇଗଲା ।

ଜଣେ ସୈନିକ ଟିକିଏ ଦୋଦୋପାଞ୍ଚ ହୋଇ ସେନାପତିଙ୍କୁ କହିଲା, "ହଜୁର୍, ଆମେ ଏ ଅଦ୍ଭୁତ ଦ୍ୱୀପ ଛାଡ଼ି ଯେତେ ଶୀଘ୍ର ସମ୍ଭବ ପଳାଇଯିବା ବୁଦ୍ଧିମାନର କାମ ହେବ । ଯେଉଁଠାରେ ଏଭଳି ମନ୍ତ୍ରବିତ୍‌ମାନେ ଅଛନ୍ତି ଯେ ସେମାନଙ୍କ ଯାଦୁ ଦ୍ୱାରା ପେଚା ବି କଥା କହିପାରେ, ସେଠାରେ ଆମର ଏ ଜଡ଼ ଅସ୍ତ୍ର କ'ଣ ଆମକୁ ରକ୍ଷାକରିପାରିବ ? ନା, ଆଜ୍ଞା, ଏଠାରେ ଆମର କୌଣସି ଉଦ୍ଦେଶ୍ୟ ସିଦ୍ଧ ହେବ ନାହିଁ ।"

ସେନାପତି ସମରସେନ ସୈନିକର କଥା ଉପରେ କୌଣସି ଗୁରୁତ୍ୱ ନ ଦେଇ ସେ କୃଷ୍ଣକାୟ ପେଚାକୁ ଲକ୍ଷ୍ୟ କରିବାକୁ ଲାଗିଲେ । ପେଚା ଗୋଟାଏ ଗଛ ଡାଳରେ ବସି ଏଣେ-

ଚେଷ୍ଟା କଲେ । ସେତିକିବେଳେ ଗୋଟାଏ କୃଷ୍ଣକାୟ ପେଚା ତାଙ୍କ ମୁଣ୍ଡଉପରେ ଦେଇ ଉଡ଼ିଯାଇ ମଣିଷ କଣ୍ଠରେ ଯେମିତି ଚେତାବନୀ ଶୁଣାଇଦେଲା : "ଚତୁର୍ନେତ୍ର, ଚତୁର୍ନେତ୍ର ! ସାବଧାନ !"

ସେ ପେଚାର ବିକଟ କଣ୍ଠସ୍ୱର ଓ ମଣିଷ-ସୁଲଭ ଭାଷା ଶୁଣି ସେନାପତି ମୁହୂର୍ତ୍ତକ ସକାଶେ ସ୍ତବ୍ଧ ଭାବରେ ଠିଆହୋଇରହିଲେ । ଯେଉଁ ମାନ୍ତ୍ରିକ ପକ୍ଷୀଙ୍କ କଣ୍ଠରେ ମଣିଷର ଭାଷା ଦେଇପାରୁଛି, ସେ କେଡ଼େ ଶକ୍ତିଶାଳୀ ହୋଇ ନ ଥିବ ! ଏଇକଥା ଭାବି ସେ ତଥା ତାଙ୍କ ସୈନିକ-ମାନେ ଆତଙ୍କ ଅନୁଭବ କଲେ ।




ତେଣେ ଏପରି ସତର୍କ ଭାବରେ ଅନାଉଥାଏ, ଯେପରିକି ସେ କୌଣସି ଦୁର୍ଗ ଉପରେ ପ୍ରହରା ଦେଉଛି ।

ସମରସେନ ଠିଆହୋଇପଡ଼ି ଜଣେ ସୈନିକ ହାତରୁ ତା' ଧନୁ ଏବଂ ଶର ନିଜ ହାତକୁ ନେଲେ ଏବଂ ପେଚକୁ ଲକ୍ଷ୍ୟ କରି ଧନୁରେ ଶର ଯୋଖିଲେ ।

"ସେନାପତି ମହୋଦୟ, ଇଏ ଆପଣ କ'ଣ କରିବାକୁ ଯାଉଛନ୍ତି ? ମନ୍ତ୍ରଶକ୍ତିରେ ବଳୀୟାନ୍ ଏ ପେଚକୁ ମାରିଲେ ଆମର କେଡ଼େ ବିପଦ ହୋଇପାରେ ସେ କଥା ଭାବିଛନ୍ତି ? ଏହାର ମାଲିକ ସହିତ ଶତ୍ରୁତା କରି ଆମର ଲାଭ ବା କ'ଣ ହେବ ?" ଜଣେ ସୈନିକ ଉତ୍କଣ୍ଠିତ ସ୍ୱରରେ କହିଲା ।

ସେନାପତି କହିଲେ, "ଚିନ୍ତା କର ନାହିଁ । କ'ଣ ହେବ ନ ହେବ, ସେ କଥା ମୋତେ ଜଣା ଅଛି ।" ଏହା ପରେ ସେ ସତକୁ ସତ ପେଚ ଉଦ୍ଦେଶ୍ୟରେ ଶର ଛାଡ଼ିଲେ । ଶର ଯାଇ ପେଚ ଦେହରେ ଲାଗିଲା । ସମରସେନ ଭାବିଥିଲେ ପେଚ ସଙ୍ଗେସଙ୍ଗେ ଛଟପଟ ହୋଇ ତଳକୁ ଖସିପଡ଼ିବ । କିନ୍ତୁ ତାଙ୍କର ସେ ଆଶା ବୃଥା ବୋଲି ମନେ ହେଲା ।

କୃଷ୍ଣକାୟ ପେଚ କିନ୍ତୁ ଶରଟିକୁ ନିଜ ଦେହରୁ ଅକ୍ଳେଶରେ କାଢ଼ି ତଳେ ପକାଇଦେଇ କହିଲା, "ରେ ଦୁଷ୍ଟ ମଣିଷ ! ତୁ ଭାବିଛୁ ମୋତେ ମାରିଦେବୁ, ନା ? ତୁ କେଉଁ ଛାର ! ତୋ'ଠାରୁ ଶହେ ଗୁଣ ବଳଶାଳୀ ଏକଚକ୍ଷୁ ମାନ୍ତ୍ରିକ ମଧ୍ୟ ମୋର କିଛି କ୍ଷତି କରିପାରି ନାହିଁ । ରହ, ରହ, ଚକ୍ଷୁର୍ନେତ୍ର ଆସି ତୋ ରକ୍ତ ପାନ କରିବାର ସମୟ ନିକଟ ହୋଇଆସିଲାଣି ।"

ଏହାପରେ ପେଚ ସେମାନଙ୍କ ଆଡ଼କୁ ଉଡ଼ିଆସିଲା । ସେନାପତି ବୁଝିଲେ ବିପଦ କମ୍ ନୁହେଁ । ସେ ସୈନିକମାନଙ୍କୁ ତାଙ୍କୁ ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଇ ନିଜେ ଦୌଡ଼ିବାକୁ ଲାଗିଲେ । ତେବେ ପେଚ ସେମାନଙ୍କ ମୁଣ୍ଡ ଉପରେ ଉଡ଼ି ଉଡ଼ି ଚିତ୍କାର କରୁଥାଏ ।

ପେଚ୍ଛର ସେ ବିକଟ ଚିତ୍କାରରେ ଆଖପାଖର ଜୀବଜନ୍ତୁମାନେ ଭୟାର୍ତ୍ତ ନାଦ କରି ଇତସ୍ତତଃ ପଳାଉଥାନ୍ତି । ପେଚ୍ଛ ମଧ୍ୟେ ମଧ୍ୟେ ଅଟ୍ଟହାସ୍ୟ ମଧ୍ୟ କରୁଥାଏ ।

ସମରସେନ ଏତେବେଳକୁ ଏହି ସିଦ୍ଧାନ୍ତ ନେଇଥାନ୍ତି କି କୌଣସି ପ୍ରକାରେ ସମୁଦ୍ର କୂଳରେ ପହଞ୍ଚି ଜାହାଜ ଧରି ସେ ଭୟଙ୍କର ଦ୍ୱୀପରୁ ଦୂରେଇ ଯିବେ । କିନ୍ତୁ ପେଚ୍ଛର ରଡ଼ି ଶୁଣି କାଳେ ତାନ୍ତ୍ରିକ ଆସି ପହଞ୍ଚିଯିବ, ସେହି ଭୟରେ ଅତର୍କ୍କା ଦୌଡ଼ି ସେମାନେ ବାଟ ଭୁଲି ସମୁଦ୍ରତଟରୁ ଦୂରକୁ ଦୂରକୁ ଚାଲିଗଲେ । ଟିକଏ ଥୟ ଧରି ଯେ ନିଜ ଗତିପଥ ନିର୍ଣ୍ଣୟ କରିବେ, ପେଚ୍ଛ ଯୋଗୁ ସେ ସୁଯୋଗ ମିଳୁ ନ ଥାଏ ।

ସମରସେନ ନିଜ ଅନୁଚରମାନଙ୍କୁ କହିଲେ, "ଆମେ ବାଟ ବଣା ହୋଇଛୁ । ପୁଣି ଏଠାରେ ଥିବା କୌଣସି ଭୀଷଣ ତାନ୍ତ୍ରିକ ବର୍ତ୍ତମାନ ଆମ ଶତ୍ରୁରେ ପରିଣତ ହେବଣି । ଏ ପରିସ୍ଥିତିରେ ଆମ ଦେଶର ଆରାଧ୍ୟ ଦେବୀ କୁଣ୍ଡଳିନୀଙ୍କ ବ୍ୟତୀତ ଆମକୁ କେହି ରକ୍ଷା କରି ପାରିବେ ନାହିଁ ।"

"ସେନାପତି ମହୋଦୟ, ଆମେ ପ୍ରଥମେ କେମିତି ଏ ପେଚ୍ଛ କବଳରୁ ନିସ୍ତାର ପାଇବୁ, ସେହି ବିଚାର କରନ୍ତୁ । ପଳାୟନ କଥା ପରେ ।" ଜଣେ ସୈନିକ କହିଲା ।

ସମରସେନ ଏହାର ଉତ୍ତରରେ କିଛି କହିବା ପୂର୍ବରୁ ଗୋଟାଏ ପ୍ରବଳ ରଡ଼ି ଶୁଭିଲା
"ଆରେ କାଳ ଭୁଜଙ୍ଗ ! ହେ ମନ୍ତ୍ର କପାଳ !"

ସେ ଧ୍ୱନି ଶୁଣିବା ମାତ୍ରେ ପେଚ୍ଛ ସେନାପତିଙ୍କ ଦଳକୁ ଛାଡ଼ି କୁଆଡ଼େ ଚାଲିଗଲା ।

ସେନାପତି ଓ ସୈନିକମାନେ କ୍ଷଣକ ପାଇଁ ଆଶ୍ୱସ୍ତ ଅନୁଭବ କଲେ । କିନ୍ତୁ ପରେ ପରେ ଅଦୂରରୁ ଶୁଭିଲା ଏକଚକ୍ଷୁ ତାନ୍ତ୍ରିକର ବିକଟ ରଡ଼ି । ସେମାନେ ପୁଣି ଦୌଡ଼ିବାକୁ ଲାଗିଲେ ।

(କ୍ରମଶଃ)





# ବିଶ୍ୱାସଘାତକତା

ରାଜା ବିକ୍ରମାର୍କ ପୁନର୍ବାର ଶ୍ମଶାନସ୍ଥିତ ବୃକ୍ଷଟି ପାଖକୁ ଲେଉଟିଆସିଲେ । ସେହି ନିର୍ଜନ ରାତି, ଘନ ଘନ ବଜ୍ର ଓ ବିଜୁଳି ସାଥିକୁ ଅଶରୀରୀମାନଙ୍କ ଅଟ୍ଟହାସ୍ୟ ପ୍ରତି ଭ୍ରୂକ୍ଷେପ ନ କରି ସେ ପୁନର୍ବାର ବୃକ୍ଷାରୋହଣ ପୂର୍ବକ ଶବଟିକୁ ଉତାରିଆଣି ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନପଥ ଅତିକ୍ରମ କରିବାକୁ ଆରମ୍ଭ କରନ୍ତେ ଶବସ୍ଥିତ ବେତାଳ କହିଲା, "ରାଜା, ଥରେ ଥରେ ଏ ପୃଥିବୀରେ ବିଶିଷ୍ଟ ଲୋକଙ୍କର ବ୍ୟବହାର ମଧ୍ୟ ବିଷମ ମନେ ହୁଏ । ରାଜ୍ୟ ଓ ରମଣୀ ଲୋଭରେ ଲୋକେ ବହୁତ ଦୁଷ୍କାର୍ଯ୍ୟ କରନ୍ତି । ଦୃଷ୍ଟାନ୍ତ ଦେଉଛି ଶୁଣ । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।"

ବେତାଳ ଗପିଲା : ଅମରାବତୀ ରାଜ୍ୟର କଥା । ଯୁବରାଜ ନବୀନସିଂହ ରୋଗଗ୍ରସ୍ତ ହୁଅନ୍ତେ ସାନଭାଇ ବୀରସିଂହ ରାଜା ହେଲେ । କିନ୍ତୁ ସେମାନଙ୍କ ଅନ୍ତେ ନବୀନସିଂହଙ୍କ ପୁତ୍ର ଅମର-ସେନ ସିଂହାସନରେ ବସିଲେ । ସେଥିରେ ଖୁବ୍



ହେଲେ ବୀରସିଂହଙ୍କ ପୁଅ ଚନ୍ଦ୍ରସେନ । ସେ ଅମରସେନଙ୍କୁ ଗୋପନରେ ହତ୍ୟା କରିବାକୁ ଚେଷ୍ଟା କଲେ । ତାଙ୍କ ଚକ୍ରାନ୍ତ ଜଣାପଡ଼ିଗଲା । ଅମରସେନ ତାଙ୍କୁ କହିଲେ, "ତୁମର ସିଂହାସନ ପାଇଁ ବହୁତ ଲୋଭ । ମୋର ବିଦ୍ୟାଧ୍ୟୟନ ପାଇଁ ଲୋଭ । ତୁମେ ପାଞ୍ଚବର୍ଷ ସିଂହାସନରେ ବସି ସନ୍ତୁକ ମେଣ୍ଟାଇନିଅ । ମୁଁ ସେତିକି ସମୟ ବାରାଣସୀ ଯାଇ ଅଧ୍ୟୟନ କରେଁ । ତା'ପରେ ତୁମେ ମୋତେ ସିଂହାସନ ଛାଡ଼ିଦେବ ।"

ଚନ୍ଦ୍ରସେନ ଖୁସୀ ହୋଇ କହିଲେ, "ଧନ୍ୟବାଦ । ମୁଁ ପାଞ୍ଚବର୍ଷ ଶାନ୍ତିଶିଷ୍ଟ ଭାବରେ ରାଜୁତି କରିବି ।"

ମୋହନପୁର ରାଜ୍ୟର ରାଜାଙ୍କର ମଣିମାଳା ନାମରେ କନ୍ୟା ଥିଲା । ରୂପଗୁଣରେ ସେ କନ୍ୟାର ପ୍ରତିଦ୍ୱନ୍ଦୀ କେହି ନ ଥିଲେ । ମୋହନପୁରର ରାଜା କନ୍ୟାର ସ୍ୱୟଂବର ପାଇଁ ସବୁ ତରୁଣ ରାଜା ଓ ରାଜପୁତ୍ରଙ୍କ ପାଖକୁ ନିମନ୍ତ୍ରଣ ପଠାଇଲେ । କିନ୍ତୁ ଚନ୍ଦ୍ରସେନଙ୍କୁ ନିମନ୍ତ୍ରଣ କଲେ ନାହିଁ ।

ଚନ୍ଦ୍ରସେନ ଅପମାନ ଅନୁଭବ କରି ମନ୍ତ୍ରୀଙ୍କୁ ନିଜ କର୍ତ୍ତବ୍ୟ କ'ଣ ବୋଲି ପଚାରନ୍ତେ ମନ୍ତ୍ରୀ କହିଲେ, "ମୋହନପୁରର ରାଜା ବୁଝାନ୍ତି ସେ ତାଙ୍କ କନ୍ୟା ରାଣୀ ହେବେ । ଆପଣ ମାତ୍ର ପାଞ୍ଚବର୍ଷ ପାଇଁ ରାଜା ହୋଇଛନ୍ତି । ତେଣୁ ସେ ଆପଣଙ୍କୁ ନିମନ୍ତ୍ରଣ କରିବେ କାହିଁକି ?"

"ତେବେ ମୁଁ ତାଙ୍କୁ ଜବଦ କରିବି । ସୈନ୍ୟଦଳ ସଜ କର ।" ଚନ୍ଦ୍ରସେନ କହିଲେ ।

"ମହାରାଜ ! ଆପଣ ଯେ ଯାଏ ରାଜା ଅଛନ୍ତି, ଆପଣଙ୍କ ଆଦେଶ ମାନିବାକୁ ମୁଁ ବାଧ । କିନ୍ତୁ ଅମରସେନଙ୍କୁ ଆପଣ ପ୍ରତିଶ୍ରୁତି ଦେଇଛନ୍ତି ଯେ ଆପଣ ଶାନ୍ତିଶିଷ୍ଟ ଭାବରେ ରାଜୁତି କରିବେ । ମୋର ଅନୁରୋଧ, ଆପଣ ସ୍ୱୟଂବର ବିଷୟରେ ମୋଟେ ଧ୍ୟାନ ଦିଅନ୍ତୁ ନାହିଁ ।" ମନ୍ତ୍ରୀ କହିଲେ ।

କିନ୍ତୁ ଚନ୍ଦ୍ରସେନ ମନ୍ତ୍ରୀଙ୍କ କଥାକୁ ଭ୍ରୂକ୍ଷେପ ନ କରି ମଣିମାଳାଙ୍କୁ ପାଇବା ଲୋଭରେ ନିଜର ଛବିଟିଏ ମୋହନପୁର ଦରବାରକୁ ପଠାଇଦେଲେ । ସଙ୍ଗେ ସଙ୍ଗେ ଦୂତ ହାତରେ ଖବର ଦେଲେ କି ରାଜା ତାଙ୍କୁ ନିମନ୍ତ୍ରଣ ନ କଲେ ସେ ମୋହନପୁର ଆକ୍ରମଣ କରି ରାଜାଙ୍କ କାନ କାଟିଆଣିବେ ।



ମୋହନପୁରର ରାଜା ଏ ବାର୍ତ୍ତା ପାଇ ଛବିକୁ ତଳେ ପକାଇ ପଦାଘାତ କଲେ । ଦୂତ କାନ-ମୁଣ୍ଡା ଆଉଁସି ଫେରିଆସିଲା ।

ଦୂତଠାରୁ ସବୁ ଶୁଣି ଚନ୍ଦ୍ରସେନ ମୋହନ-ପୁର ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ।

ମୋହନପୁରର ରାଜା ତତ୍‌କ୍ଷଣାତ୍ ପୂର୍ବରୁ ନିମନ୍ତ୍ରିତ ରାଜପୁତ୍ରମାନଙ୍କୁ ଏହି ବାର୍ତ୍ତା ପଠାଇଲେ କି ଯିଏ ଚନ୍ଦ୍ରସେନଙ୍କ ମୁଣ୍ଡ କାଟିଆଣିପାରିବ, ସେ ମଣିମାଳାଙ୍କୁ ପାଇବ ।

ଅନେକ ରାଜପୁତ୍ର ନିଜ ନିଜ ସୈନ୍ୟସାମନ୍ତ ଧରି ଅମରାବତୀ ରାଜ୍ୟ ଅଭିମୁଖେ ଅଗ୍ରସର ହେଲେ । ଗୁପ୍ତଚରମାନଙ୍କ ପାଖରୁ ଏସବୁ ଅବଗତ ହୋଇ ଅମରସେନ ଯଥାଶୀଘ୍ର ଆସି ଅମରାବତୀରେ ପହଞ୍ଚିଲେ । ନଅର ଉପରକୁ ଯାଇ ସେ ଅଦୂରରୁ ଆକ୍ରମଣକାରୀମାନେ ମାଡ଼ି-ଆସୁଥିବାର ଦେଖିଲେ । ତାଙ୍କ ପାଖରେ ଠିଆ ହୋଇଥାନ୍ତି ଚନ୍ଦ୍ରସେନ । ସେତେବେଳକୁ ଚନ୍ଦ୍ର-ସେନ ଆତଙ୍କରେ ଥରୁଥାନ୍ତି ।

ଯେତେବେଳେ ଆକ୍ରମଣକାରୀ ରାଜକୁମାର-ମାନେ ନଅର ପ୍ରାଚୀର ପାଖରେ ପହଞ୍ଚି-ଗଲେ, ଅମରସେନ ହଠାତ୍ ନିଜ ତରବାରି ବାହାର କରି ଚନ୍ଦ୍ରସେନଙ୍କ ମୁଣ୍ଡ କାଟିଦେଲେ । ମୁଣ୍ଡ ଯାଇ ପ୍ରାଚୀର ସେପଟେ ପଡ଼ିଲା ।

ଆକ୍ରମଣକାରୀ ରାଜକୁମାରମାନେ ଦେଖିଲେ ଚନ୍ଦ୍ରସେନଙ୍କ ମୁଣ୍ଡ ସେମାନଙ୍କ ପୂର୍ବରୁ ଜଣେ କାଟିସାରିଲାଣି । ସେମାନେ ଯିଏ ଯା' ରାଜ୍ୟକୁ ଫେରିଗଲେ । ଅମରସେନ ଚନ୍ଦ୍ରସେନଙ୍କ ମୁଣ୍ଡ ଧରି ମୋହନପୁରରେ ପହଞ୍ଚିଲେ । ସର୍ତ୍ତ ଅନୁ-ସାରେ ରାଜା ମଣିମାଳା ସହ ତାଙ୍କ ବିବାହ ଦେଲେ ।

ବେତାଳ ଟିକିଏ ଚୁପ୍ ରହି ପ୍ରଶ୍ନ କଲା : "ରାଜା ! ଅମରସେନଙ୍କ ବ୍ୟବହାର ଯେ ନିହାତି ସ୍ୱାର୍ଥପ୍ରଣୋଦିତ, ସେଥିରେ ସନ୍ଦେହ ନାହିଁ । ରାଜକୁମାରୀ ମଣିମାଳାଙ୍କୁ ବିବାହ କରିବା ପାଇଁ ସେ ଚନ୍ଦ୍ରସେନଙ୍କସହ ବିଶ୍ୱାସଘାତକତା କଲେ କିନା ! ସେ ଯାହା ହେଉ, ଯେଉଁ ଅମରସେନ ଚନ୍ଦ୍ରସେନଙ୍କୁ ପାଞ୍ଚବର୍ଷ ପାଇଁ ରାଜ୍ୟ ଛାଡ଼ିଦେଇ ଭଳି ମହତ୍ତ୍ୱ ଦେଖାଇଥିଲେ, ସେ ପୁଣି ଏଭଳି କାର୍ଯ୍ୟ କଲେ କିପରି ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ

ତୁମ ଶିର ହେବ ସ୍କନ୍ଧଚ୍ୟୁତ ।"

ରାଜା ବିକ୍ରମ ମୁହୂର୍ତ୍ତିଟିଏ ବିଳମ୍ବ ନ କରି କହିଲେ : "ଅମରସେନଙ୍କ ଆଚରଣ ଉପରେ ମନ୍ତବ୍ୟ ଦେବା ପୂର୍ବରୁ ପ୍ରଥମେ ଚନ୍ଦ୍ରସେନଙ୍କ ଚରିତ୍ର ବିଚାର କରିବା ଆବଶ୍ୟକ । ଭୁଲିଗଲେ ଚଳିବ ନାହିଁ ଯେ ଥରେ ଚନ୍ଦ୍ରସେନ ଅମର-ସେନଙ୍କୁ ହତ୍ୟା କରିବାକୁ ଚେଷ୍ଟା କରିଥିଲେ । ଅମରସେନ ଚନ୍ଦ୍ରସେନଙ୍କୁ କେବଳ କ୍ଷମା କରି ନ ଥିଲେ, ରାଜା ହୋଇ ସଉକ ମେଣ୍ଟାଇବାର ଦୁର୍ଲଭ ସୁଯୋଗ ଦେଇଥିଲେ । ଚନ୍ଦ୍ରସେନ ଶାନ୍ତିଶିଷ୍ଟ ଭାବରେ ରାଜୁତି କରିବାର ପ୍ରତିଶ୍ରୁତି ଦେଇ ତା'ପରେ ସେ ପ୍ରତିଶ୍ରୁତି ଭଙ୍ଗ କରି ବିଶ୍ୱାସଘାତକତା କଲେ ।

"ଅମରସେନ ଯଦି ଚନ୍ଦ୍ରସେନଙ୍କୁ ହତ୍ୟା କରି ନ ଥାନ୍ତେ ତେବେ କ'ଣ ହୋଇଥାନ୍ତା ? କିଛି ସମୟ ଭିତରୁ ଆକ୍ରମଣକାରୀ ରାଜକୁମାର-ମାନଙ୍କ ଭିତରୁ କାହାରି ହେଲେ କାହାରି ହାତରେ ଚନ୍ଦ୍ରସେନ ମରିଥାନ୍ତେ । ଏତେଗୁଡ଼ିଏ ସୈନ୍ୟବାହିନୀଙ୍କୁ ମୁକାବିଲା କରିବା ଅମରାବତୀର ସୈନ୍ୟବାହିନୀ ପକ୍ଷେ ସମ୍ଭବପର ହୋଇ ନ ଥାନ୍ତା । ତା'ଛଡ଼ା, ମନ୍ତ୍ରୀଙ୍କ ପରାମର୍ଶ ଅମାନ୍ୟ କରି ଚନ୍ଦ୍ରସେନ ଯେ ମଣିମାଳାଙ୍କୁ ବିବାହ ହେବାକୁ ମନ ବଳାଉଥିଲେ, ସେଥିରୁ ଏତିକି ସ୍ପଷ୍ଟ ହୋଇଗଲା ଯେ ସେ ରାଜଗାଦି ଛାଡିବା ମତଲବରେ ନ ଥିଲେ । କାରଣ ମଣିମାଳାଙ୍କୁ ରାଣୀ ରୂପେ ନ ରଖି ପାରିଲେ ସେ ଅପମାନ ଅନୁଭବ କରନ୍ତେ । ନିଜେ ରାଜା ହୋଇ ରହିବାକୁ ହେଲେ ଅମରସେନଙ୍କୁ ସେ ହତ୍ୟା କରନ୍ତେହିଁ କରନ୍ତେ । ରାଜ୍ୟର ଶାନ୍ତି ପାଇଁ ତଥା ଏ ସମସ୍ତ ବିଚାରକୁ ନେଇ ଅମରସେନ ଯାହା କଲେ, ତାହା ସମୁଚିତ ନିଷ୍ପତ୍ତି ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷଡାଳରେ ଝୁଲିପଡ଼ିଲା । (କଳ୍ପିତ)





# ରାଜା ଓ ଦସ୍ୟୁ

ରାଜ୍ୟର ନାମ ଭଦ୍ରଦେଶ । ରାଜାଙ୍କ ନାମ କୁବେର । ସେ ରାଜ୍ୟରେ ଧନସମ୍ପଦର ଅଭାବ ନ ଥାଏ । ଷଡ଼ଋତୁର ଆବର୍ତ୍ତନ ଠିକ୍ ଠିକ୍ ଭାବରେ ହେଉଥାଏ । କ୍ଷେତମାନ ଶସ୍ୟରେ ଉଚ୍ଛୁଳିଉଠୁଥାନ୍ତି । ତଥାପି ଦେଶର ସାଧାରଣ ଜନତାଙ୍କ ଦୁଃଖ କହିଲେ ନ ସରେ । କାରଣ ରାଜାଙ୍କୁ ଘେରି ରହିଥାନ୍ତି ଦଳେ ଚାଟୁକାର । ସେହି ଚାଟୁକାରଦଳଙ୍କୁ ଟଙ୍କାପଇସା ଯୋଗାଉଥାନ୍ତି ରାଜ୍ୟର ମୁଷ୍ଟିମେୟ ଧନବ୍ୟକ୍ତି ଏବଂ ଦରବାରର ବଡ଼ ବଡ଼ କର୍ମଚାରୀମାନେ । ସେହି ଦୁଇଦଳ ରାଜ୍ୟର ସବୁ ସମ୍ପଦ ଉପଭୋଗ କରୁଥାନ୍ତି । ଜନସାଧାରଣ ସେମାନଙ୍କ ନିର୍ଯାତନାରେ ନିର୍ବାକ୍ ହୋଇ ରହିଥାନ୍ତି ।

ହଠାତ୍ ରାଜ୍ୟରେ ଜଣେ ପ୍ରବଳ ଦସ୍ୟୁ ଦେଖା ଦେଲା । ତା'ର ଅସଲ ନାମ ଯାହା ହେଉ, ସର୍ବସାଧାରଣରେ ସେ 'ବନ୍ଧୁ' ବୋଲି ପରିଚିତ ହେଲା । ସେ ଏକାକୀ ଅସୀମ ସାହସ ସହକାରେ ଅତର୍କିତେ ବଡ଼ ବଡ଼ ଧନିକ ଏବଂ ରାଜକର୍ମଚାରୀମାନଙ୍କ ଘର ଚଡ଼ାଉ କରି ସେମାନଙ୍କ ସଞ୍ଚିତ ଧନ ଧରି ପଳାଇଯାଏ । ସେ ଧନ ଗରିବ ଲୋକଙ୍କ ଭିତରେ ବିତରିତ ହୁଏ ।

ଜନସାଧାରଣଙ୍କ ଭିତରେ 'ବନ୍ଧୁ ଦସ୍ୟୁ' ଗୋଟିଏ ଆଦରର ନାମରେ ପରିଣତ ହେଲା । କିନ୍ତୁ ଦସ୍ୟୁର ପ୍ରାଦୁର୍ଭାବରେ ଧନିକ ଏବଂ ଅମାତ୍ୟମାନେ ଅତ୍ୟନ୍ତ ଆତଙ୍କିତ ହୋଇ ରାଜାଙ୍କ ପାଖରେ ପ୍ରତିକାର ଦାବି କଲେ ।

ରାଜା ତାଙ୍କ ସିପାହି-ସର୍ଦ୍ଦାରଙ୍କୁ ପାଖକୁ ଡାକି ଧମକାଇଦେଲେ କି ଦସ୍ୟୁ ଧରା ନ ପଡ଼ିଲେ ସିପାହିମାନେ ତଡ଼ା ଖାଇବେ । ସିପାହିଦଳ ଆପ୍ରାଣ ଚେଷ୍ଟା କଲେ । କିନ୍ତୁ ବନ୍ଧୁ ଦସ୍ୟୁକୁ ଧରିପାରିଲେ ନାହିଁ । ଏହାର କାରଣ କାହାକୁ ଅଛପା ନ ଥିଲା । ପ୍ରଥମତଃ ବନ୍ଧୁ ଦସ୍ୟୁ ତା' ନିଜ କାମରେ ଧୁରନ୍ଧର ଥିଲା । ଦ୍ୱିତୀୟରେ ସେ ଜନସାଧାରଣଙ୍କ ଭିତରେ ଅକ୍ଲେଶରେ ଲୁଚିଯାଉଥିଲା । ଯେତେ ଧମକଚମକ ଦେଲେ ମଧ୍ୟ କେହି ତା'ର ସନ୍ଧାନ ଦେଉ ନ ଥିଲେ ।

ସିପାହିମାନେ ଅକୃତକାର୍ଯ୍ୟ ହେବାର ଦେଖି ରାଜା ଘୋଷଣା କଲେ କି ଯିଏ ବନ୍ଧୁ ଦସ୍ୟୁକୁ ଧରାଇଦେବ, ସେ ଏକଶତ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଇବ । ସେଥିରେ ବି ଫଳ ହେଲା ନାହିଁ । ପୁରସ୍କାର ପରିମାଣ କ୍ରମେ ଦୁଇଶତ, ପାଞ୍ଚଶତ, ଏବଂ ସହସ୍ର ମୁଦ୍ରାରେ ଯାଇ ପହଞ୍ଚିଲା ।

ରାଜା ତେଣିକି ଆଉ ଏକ ଉପାୟର ଆଶ୍ରୟ ନେଲେ । ସେ କେତେଜଣ ନିରୀହ ଲୋକଙ୍କୁ ଧରିଆଣି କାରାରୁଦ୍ଧ କଲେ । ପ୍ରଚାର କରିଦିଆ-ହେଲା ଯେ ସେମାନେ ବନ୍ଧୁ ଦସ୍ୟୁର ଅନୁଚର ଓ ତା'ର ସନ୍ଧାନ ଜାଣନ୍ତି, କିନ୍ତୁ ପ୍ରକାଶ କରୁନାହାନ୍ତି । ରାଜା ଭାବିଥିଲେ, ବନ୍ଧୁ ଦସ୍ୟୁ ସେ ନିରୀହ ଲୋକଙ୍କୁ ଉଦ୍ଧାର କରିବା ନିମନ୍ତେ ନିଜେ ଆସି ଧରାଦେବ । କିନ୍ତୁ ତା' ନୋହିଲା ।

ରାଜାଙ୍କ କ୍ରୋଧ ଓ ହତାଶା ବଢ଼ିଚାଲିଥାଏ । ସେ ନିଜ ଚାଟୁକାରମାନଙ୍କ ମନ୍ତ୍ରଣାରେ ସେ ନିରୀହ ବନ୍ଦୀମାନଙ୍କ ଭିତରୁ ଦୁଇଜଣଙ୍କୁ ସତରେ ଫାଶୀରେ ଝୁଲାଇଦେଲେ । ଏହି ଘୋଷଣା କରାହେଲା ଯେ ସେମାନେ ବନ୍ଧୁ ଦସ୍ୟୁର ସନ୍ଧାନ ନ ଦେବାରୁ ଏ ଦଣ୍ଡ ପାଇଲେ । ଅନ୍ୟ ବନ୍ଦୀ-ମାନେ ମଧ୍ୟ ଫାଶୀରେ ଝୁଲିବେ ।

ପରଦିନ ବନ୍ଧୁ ଦସ୍ୟୁ ଆସି ନିଜେ ଧରା ଦେଲା । ସିପାହିମାନେ ତାକୁ ରାଜାଙ୍କ ଆଗକୁ ନେଇଆସିଲେ ।

"ଦସ୍ୟୁ, ତୁମେ କେଡ଼େ ନିର୍ଦ୍ଦୟ ! ଅକାରଣ ଦୁଇଜଣ ନିରୀହ ଲୋକଙ୍କୁ ପ୍ରାଣ ଦେବାକୁ ପଡ଼ିଲା । ତୁମେ ଆଗରୁ ଧରା ଦେଇଥିଲେ ସେ ଦୁହେଁ ରକ୍ଷା ପାଇଥାନ୍ତେ !" ରାଜା କହିଲେ ।

ବନ୍ଧୁ ଦସ୍ୟୁ ତିଳେ ମଧ୍ୟ ଭୟ ବା ଅନୁ-ଶୋଚନା ନ ଦେଖାଇ କହିଲା, "ଧିକ୍ ଆପଣଙ୍କ



ରାଜପଣକୁ । ନିରୀହ ଲୋକଙ୍କୁ ଦଣ୍ଡ ଦେବା ପାପ । ଏହା ଜାଣି ମଧ୍ୟ ଆପଣ ଦୁଇଜଣଙ୍କୁ ହତ୍ୟା କଲେ । ମୋତେ ଧରିବାରେ ଆପଣଙ୍କ ଅକ୍ଷମତାକୁ ଘୋଡ଼ାଇବାକୁ ଯାଇ ଆପଣ ଏ ନିର୍ଲଜ୍ଜ କାମ କଲେ ।"

"ଦସ୍ୟୁକୁ ଧରିବା ଅବଶ୍ୟ ରାଜାର କର୍ତ୍ତବ୍ୟ । ଯେତେବେଳେ ନ୍ୟାୟପର ଉପାୟରେ ତୁମକୁ ଧରି ନ ପାରିଲି, ସେତେବେଳେ ଟିକେ ଅନ୍ୟାୟ ନ କରି ଉପାୟ ନ ଥିଲା ।" ରାଜା କହିଲେ ।

"ନ୍ୟାୟସଙ୍ଗତ ଉପାୟରେ ଆପଣ ମୋତେ ଧରି ନ ପାରିଲେ କିଆଁ, ସେ କଥା ଭାବି ଦେଖିଛନ୍ତି ?" ବନ୍ଧୁ ଦସ୍ୟୁ ପଚାରିଲା ।

"ନିଶ୍ଚୟ । ଯେଉଁ ଧନ ଲୁଟ୍ କର, ତାକୁ ଲୋକଙ୍କୁ ଉତ୍କୋଚ ଦେବାରେ ଲଗାଅ । ଲୋକେ ତୁମ ସନ୍ଧାନ ଦିଅନ୍ତି ନାହିଁ ।" ରାଜା କହିଲେ ।

ବନ୍ଧୁ ଦସ୍ୟୁ ହସି କହିଲା, "ଜଣେ ରାଜା ବୋଲାଉଥିବା ଲୋକଠାରୁ ଏଭଳି ନିର୍ବୋଧ ଉତ୍ତର ମୁଁ ଆଶା କରି ନ ଥିଲି । ମୁଁ କେତେ ଲୋକଙ୍କୁ ଉତ୍କୋଚ ଦେଇ ପାରିବି ? ମୋ ନିଜ ସ୍ୱାର୍ଥ ରକ୍ଷା କରିବାକୁ ଯାଇ କେତେ ଲୋକଙ୍କ ପ୍ରେମ ପାଇପାରିବି ? ସତ କଥା ହେଲା, ରାଜା ହିସାବରେ ଆପଣଙ୍କର ଯାହା କର୍ତ୍ତବ୍ୟ, ମୁଁ ତାହା କରୁଥିଲି । ତେଣୁ ରାଜାର ଯେଉଁପରି ଶ୍ରଦ୍ଧା ଭକ୍ତି ପ୍ରାପ୍ୟ, ମୁଁ ତାହା ପାଉଥିଲି । ସହସ୍ର ସ୍ୱର୍ଣ୍ଣମୁଦ୍ରା ବି ମୋତେ ଧରାଇ ଦେବା ଦିଗରେ ସେମାନଙ୍କୁ ପ୍ରଲୁବ୍ଧ କରିପାରିଲା ନାହିଁ । ଆପଣ ନିରୀହ ଲୋକଙ୍କୁ ବନ୍ଦୀ କରିବା ସତ୍ତ୍ୱେ ସେମାନେ ମୋତେ ଧରା ଦେବା ପାଇଁ ଛୁଡ଼ିଲେ ନାହିଁ । ଦୁଇଜଣ ନିର୍ଦ୍ଦୋଷ ଫାଶୀ ପାଇବା ପରେ ବି ସେମାନେ ମୋତେ ଛୁଡ଼ି ନ ଥିଲେ ।



କିନ୍ତୁ ମୁଁ ଜୋର୍ କରି ବାହାରିଆସି ଧରା ଦେଲି । କାରଣ ଯେଉଁ ନିଷ୍ଠୁର ଲୋକଙ୍କ ପ୍ରରୋଚନାରେ ଆପଣ କାମ କରୁଛନ୍ତି, ସେମାନେ ଆହୁରି ଅନେକ ନିର୍ଦ୍ଦୋଷ ଲୋକଙ୍କୁ ଫାଶୀରେ ଝୁଲାଇ ପାରନ୍ତି । କିନ୍ତୁ ଜାଣିରଖନ୍ତୁ, ଜନସାଧାରଣ ସୁଯୋଗ ପାଇବା ମାତ୍ରେ ତୀବ୍ର ପ୍ରତିଶୋଧ ନେବେ ।"

ବାହାରେ କୋଳାହଳ ଶୁଭିଲା । ରାଜାଙ୍କୁ ଖବର ମିଳିଲା କି ହଜାର ହଜାର ଲୋକ ନଅର ଚାରିପଟେ ଠୁଳ ହେଲେଣି । ବନ୍ଧୁ ଦସ୍ୟୁ ପାଇଁ ସେମାନେ ଉଦ୍‌ବିଗ୍ନ । ଏପରିକି କେହି କେହି କହୁଛନ୍ତି ସେମାନଙ୍କ ପ୍ରାଣ ନେଇ ବନ୍ଧୁ ଦସ୍ୟୁଙ୍କୁ ଛଡ଼ାଇଆଯାଉ ।

ରାଜା ଟିକିଏ ନୀରବ ରହି ପୁଣି ପଚାରିଲେ, "ତୁମେ କହିଲ ତୁମେ ରାଜାର କର୍ତ୍ତବ୍ୟ କରୁଛ । ରାଜାର କର୍ତ୍ତବ୍ୟ କ'ଣ ଚୋରି କରିବା ?"

"ନା, ରାଜାର କର୍ତ୍ତବ୍ୟ ଗରିବ ଓ ସାଧାରଣ ଲୋକଙ୍କୁ ଅତ୍ୟାଚାରୀମାନଙ୍କ କବଳରୁ ରକ୍ଷା କରିବା, ସେମାନଙ୍କ ସହାୟତା କରିବା । ମୁଁ କେବଳ ଅତ୍ୟାଚାରୀ ଓ ଅବିବେକୀ ଲୋକଙ୍କ ଘର ଲୁଣ୍ଠନ କରୁଥିଲି । ଗରିବ ଲୋକଙ୍କ ସହାୟତା କରୁଥିଲି ।" ବନ୍ଧୁ ଦସ୍ୟୁ ଜବାବ ଦେଲା ।

"ତୁମେ ରାଜା ହେବା ମତଲବ୍‌ରେ ଅଛ, ମନେହୁଏ !" ରାଜା କହିଲେ ।

"ନା । ମୋର ରାଜ୍ୟଶାସନ କଲାଭଳି ସାମର୍ଥ୍ୟ ନାହିଁ କି ସେଭଳି ଅଭିଳାଷ ନାହିଁ । ଆପଣଙ୍କୁ ମୋର କହିବାର କଥା ଏତିକି, ଆପଣ ଏପରି ଶାସନ ନ କରନ୍ତୁ, ଯାହା ଫଳରେ ଲୋକେ ରାଜା ଅପେକ୍ଷା ଜଣେ ଦସ୍ୟୁ ପ୍ରତି ଅଧିକ ଶ୍ରଦ୍ଧାବାନ୍ ହେବେ ! ଆପଣଙ୍କ ଶାସନ ଭଲ ହେଲେ ଦସ୍ୟୁମାନେ ସ୍ୱୟଂ ଉଭେଇଯିବେ । ଏହା କହି ବନ୍ଧୁ ଦସ୍ୟୁ ଧୀରେଧୀରେ ଚାଲିଯିବାକୁ ଲାଗିଲା ।

"ମହାରାଜ ! ମହାରାଜ ! ଦସ୍ୟୁ ପଳାଇଯାଉଛି !" ପାଟିକଲେ କେତେଜଣ ଚାଟୁକାର ।

"ଚୋପ୍ !" ଧମକ ଦେଲେ ରାଜା ଓ କହିଲେ, "ସେ ଦସ୍ୟୁ ନୁହେଁ । ସେ ବନ୍ଧୁ । ତୁମେଗୁଡ଼ାକ ଅସଲ ଦସ୍ୟୁ !"

ରାଜା କୁବେର ତେଣିକି ଚାଟୁକାରମାନଙ୍କୁ ଏଡ଼ାଇ ଚାଲିଲେ । ନିଜର ସବୁ ସମୟ ଓ ଶକ୍ତି ଦେଇ ରାଜ୍ୟରେ ସୁଶାସନ ପ୍ରବର୍ତ୍ତନ କଲେ ।





# ପରଧନ

ଅନ୍ଧାର ରାତି । ସେଥିରେ ପୁଣି ପ୍ରବଳ ବର୍ଷା ।

ଖାଇସାରି ଅଶୋକ କବାଟ ବନ୍ଦ କରିବାକୁ ଯାଇ ଦେଖେ, ଜଣେ ଅଚିହ୍ନା ଲୋକ ବାହାର ବାରଣ୍ଡାରେ ଠିଆ ହୋଇଛି । ଲୋକଟି ସମ୍ପୂର୍ଣ୍ଣ ଓଦା ହୋଇଯାଇଛି । କାଖରେ ଜାକିଥାଏ ପ୍ଲେଟ ଗଣ୍ଠିଲିଟିଏ ଏବଂ ଖଣ୍ଡିଏ ଶୁଖିଲା ଲୁଗାରେ ମୁଣ୍ଡ ପୋଛୁଥାଏ । ତା'ର ଗୋଟିଏ ହାତ ଛଅଟି ଆଙ୍ଗୁଳିବିଶିଷ୍ଟ ।

ତାକୁ ବାରଂବାର ନିରୀକ୍ଷଣ କରି ଅଶୋକ କହିଲା, "ଆପଣ ଭିଜିଯାଇଛନ୍ତି, ଭିତରକୁ ଆସି ଲୁଗା ବଦଳାନ୍ତୁ ।"

"ଧନ୍ୟବାଦ ।" କହି ଲୋକଟି ଭିତରକୁ ଆସିଲା । ଜଣାଯାଉଥିଲା ଲୋକଟି ଖୁବ୍ ଗରିବ । ସେ ଲୁଗା ବଦଳାଇ ଓଦା ଲୁଗା ଶୁଖାଉଥାଏ । ଇତି ମଧ୍ୟରେ ଘର ଭିତରୁ ଅଶୋକର ସ୍ତ୍ରୀ କନକ ଆସି ପହଞ୍ଚିଲା । ସେ ଏସବୁ ଦେଖି ଅଶୋକକୁ ଭିତରକୁ ଡାକି କହିଲା, "ରାସ୍ତାର ବୁଲା ଗରିବଙ୍କୁ ଡାକି କାହିଁକି ଘରେ ପୂରାଇଛ ?"

"ଗରିବ ହେଲା ତ କ'ଣ ହେଲା ? ସେ ତ ଆମର ଅତିଥି । ଶୀଘ୍ର ରୋଷେଇ କର ।" ଅଶୋକ କହିଲା ।

"ବାଃ, ଓଲଟା ରୋଷେଇ ! ବର୍ଷା ବନ୍ଦ ହେବା ମାତ୍ରେ ତାକୁ ବାହାରକୁ ବିଦା କରି-ଦିଅ ।" କନକ କହିଲା ।

"ଅନ୍ତତଃ ମୁଁ ଯାଇ ତା' ଶୋଇବା ବ୍ୟବସ୍ଥା ତ କରେ । ବର୍ଷା ଛାଡ଼ିବାର କୌଣସି ଲକ୍ଷଣ ଦେଖାଯାଉ ନାହିଁ ।" ଅଶୋକ କହିଲା ।

"ଦେଖ ଏସବୁ ଚଳିବ ନାହିଁ । ଅଜଣା ଅଚିହ୍ନା କାହାକୁ ଘରେ ଜାଗା ଦେଉଛ । ଯଦି ରାତିରେ ସେ ସବୁ ଲୁଟିନିଏ ?" କନକ କହିଲା ।

ଜଗତନାରାୟଣ



"ସେ ବ୍ୟକ୍ତି ବିଷୟରେ ତୁମେ ଯଦି ସବୁ ଜାଣନ୍ତ ତେବେ ଏପରି କଥା କଦାପି କୁହନ୍ତ ନାହିଁ ।" ଅଶୋକ କହିଲା ଓ ତା'ପରେ ସେହି ଅପରିଚିତର ଜୀବନ କଥା ଗପିଲା :

ଅଶୋକ ପିଲାଦିନେ ଲଫଙ୍ଗା ହୋଇ ବୁଲୁଥାଏ । କୋଡ଼ିଏ ବର୍ଷ ବୟସ ହେବା ପରେ ମଧ୍ୟ ଦେଖାଗଲା ସେ କିଛି କାମକୁ ଯୋଗ୍ୟ ନୁହେଁ । ଦିନେ ବାପାକୁ କହିଲା, ସେ କିଛି ବ୍ୟବସାୟ କରିବାକୁ ଚାହେଁ । ସେଥି ପାଇଁ ମୂଳଧନ କିଛି ଦରକାର । କିନ୍ତୁ ତା' ବାପା କିଛି ଟଙ୍କା ଦେଲେ ନାହିଁ । ଜଣେ ସାଙ୍ଗ କଥାରେ ପଡ଼ି ଅଶୋକ ନିଜ ଘରୁ ଦୁଇ ହଜାର ଟଙ୍କା ଚୋରି କରି ଅନ୍ୟ ଏକ ଗ୍ରାମକୁ ପଳାଇଗଲା । ସାଙ୍ଗଟି କିଛି ବ୍ୟବସାୟ କରିବା ବାହାନାରେ ତା'ଠାରୁ ସବୁ ଧନ ନେଇଯାଇ ନିରୁଦ୍ଦେଶ ହେଲା ।

ଅଶୋକ ଶୁଣିଲା ଯେ ତା'ର ବାପା କେଉଁଠାରୁ ଖବର ସଂଗ୍ରହ କରି ତାକୁ ଫେରାଇନେବାକୁ ଆସୁଛନ୍ତି । ତେଣୁ ସେ ସେହି ଗାଁ ଛାଡ଼ି ଗୋଟିଏ ଜଙ୍ଗଲ ରାସ୍ତାରେ ଚାଲିଗଲା ।

କିଛିଦୂର ଗଲା ପରେ ଦେଖିଲା ଜଣେ ଭଦ୍ରଲୋକ ଏକ ପାହାଡ଼ ସ୍ରୋତ ନଦୀରେ ଗାଧୁଆପାଧୁଆ କରି ମୁହଁହାତ ପୋଛୁହେଉଛନ୍ତି । ସେ ମୁଣ୍ଡ ନୁଆଁଇ ଠିଆ ହୋଇଥିଲେ ଓ ତାଙ୍କର ଡାହାଣ ହାତରେ ଛଅଟି ଆଙ୍ଗୁଳି ଥିଲା ।

ସେହି ବ୍ୟକ୍ତିଙ୍କ ପଛପାଖରେ ଏକ ବାକ୍ସ ରଖା ହୋଇଥିଲା । ସେ ଦେଖିପାରିବେ ନାହିଁ ଭାବି ଅଶୋକ ସେ ବାକ୍ସଟି ନେଇ ପଳାଇଲା । ଅନେକ ଦୂର ଯାଇ ଦେଖେ ତା' ଭିତରେ ସୁନାର ମୋହରସବୁ ଅଛି ।

ଅଶୋକ ବହୁତ ଖୁସୀ ହୋଇ ଘରକୁ ଫେରିଲା ଓ ବାପାଙ୍କୁ କହିଲା, "ଦେଖ ବାପା, ଏସବୁ ମୁଁ ରୋଜଗାର କରି ଆଣିଛି ।"

"ତୁ କି ବ୍ୟବସାୟ କରୁଥିଲୁ ?" ବାପା ସନ୍ଦେହ କରି ପଚାରିଲେ ।



"ସେ କଥା ପଚ୍ଚର ନାହିଁ । ଏହି ଧନରେ ମୁଁ ଲୁଗାବେପାର କରିପାରିବି ।" ଅଶୋକ କହିଲା ।

ତା'ପରେ ସେହି ଟଙ୍କାରେ ସେ ଲୁଗା-ବେପାର କରି ବହୁତ ଧନ ଉପାର୍ଜନ କଲା ଓ ବିବାହ କଲା । ସେହି ମୂଳଜମାରୁ ତା'ର ଧନ ବଢ଼ିଚାଲିଛି ।

ଏସବୁ ଶୁଣିସାରି ଅଶୋକ କହିଲା, "ମୋର ଏ ସାରା ସମ୍ପତ୍ତି ତାଙ୍କର କହିଲେ ଚଳେ । ସେ ତ ଆମ ପାଇଁ ଈଶ୍ୱରଙ୍କ ପରି ।"

"ସେ ଧନ ତାଙ୍କ ଭାଗ୍ୟରେ ନ ଥିଲା । ବର୍ତ୍ତମାନ ତୁମେ ତାଙ୍କୁ ଏଠାରୁ ତୁରନ୍ତ ବାହାର କରି ନ ଦେବ ତ ପରେ ପଶ୍ଚାତ୍ତାପ କରିବାକୁ ପଡ଼ିବ ।" କନକ କହିଲା ।

କିନ୍ତୁ ସେ ଝଡ଼ବର୍ଷାରେ ଅଶୋକ ତାଙ୍କୁ ଘରୁ ତଡ଼ିଦେଲା ନାହିଁ । ବରଂ ଶୋଇବା ପାଇଁ ବିଛଣା କରିଦେଲା । ଗପ କରୁକରୁ ଜାଣିଲା ଯେ ତା'ର ନାମ ଜଗନ୍ନାଥ । ସେ ଜଣଙ୍କର ବ୍ୟବସାୟ ଦେଖାଶୁଣା କରେ ।

କନକ ଅଶୋକ ଉପରେ ଟିକିଏ ଖିଟିଖିଟି ହୋଇ ଶୋଇଗଲା । କିନ୍ତୁ ଅଶୋକ ଶୋଇ ପାରିଲା ନାହିଁ । ସେ ଭାବିଲା, ହାୟ ଜଗନ୍ନାଥ କି ଗରିବ ହୋଇ ବୁଲୁଛି ! ବରଂ ତାଙ୍କୁ ସାହାଯ୍ୟ କରିବା ଉଚିତ । ଏ କଥା ମନରେ ବିଚାରି କରି ସେ ପାଞ୍ଚହଜାର ଟଙ୍କା ଗୋଟାଏ ଥଳିରେ ପୂରାଇ ଆଗନ୍ତୁକର ଗଣ୍ଠିଲିଟି ମଧ୍ୟରେ ଗୋପନରେ ରଖିଦେଲା ।

ଭୋରରୁ ଉଠି ଜଗନ୍ନାଥ ନିଜ ଗଣ୍ଠିଲିଟି ଧରି ଅଶୋକକୁ କୃତଜ୍ଞତା ଜଣାଇ ଚାଲିଗଲା । କିନ୍ତୁ ଦ୍ୱିପ୍ରହର ବେଳକୁ ପୁଣି ଲେଉଟିଆସି କହିଲା, "ମୁଁ ଜାଣେନା କିପରି ଏ ଥଳି ମୋ ପୁଟୁଳା ଭିତରକୁ ଆସିଲା । ତେବେ ଆପଣଙ୍କ ଘରେହିଁ ତ ଥିଲି । ତେଣୁ ଏହା ଆପଣ ରଖନ୍ତୁ ।" ଏ କଥା କହି ଜଗନ୍ନାଥ ଥଳିଟି ଅଶୋକ ହାତରେ ଦେଇଦେଲା ।

ଜଗନ୍ନାଥର ଏପରି ସାଧୁତା ଦେଖି ଅଶୋକ

ଆଖିରେ ଲୁହ ଆସିଗଲା । ସେ ଭାବିଲା ଏପରି ସାଧୁଲୋକଠାରୁ ଦିନେ ଯେ ସେ ଧନ ନେଇଯାଇଥିଲା । ଗ୍ଲାନିରେ ତା' ମନ ଭରିଗଲା ।

ତା'ପରେ ଅଶୋକ କହିଲା, "ମହାଶୟ, ମୁଁ ହିଁ ଏହି ଥଳି ଆପଣଙ୍କ ପୁଟୁଳା ଭିତରେ ରଖିଦେଇଥିଲି । ଜଣାଯାଉଛି ବର୍ତ୍ତମାନ ବୋଧେ ଆପଣଙ୍କ ଆର୍ଥିକ ଅବସ୍ଥା ଭଲ ନୁହେଁ । ଆପଣ ଏତକ ରଖିନଅନ୍ତୁ ।"

ଏ କଥା ଶୁଣି ଜଗନ୍ନାଥ ହସି ହସି କହିଲା, ପରର ଧନ ମୋ ପାଇଁ ମୋ ଷଷ୍ଠ ଆଙ୍ଗୁଠି ପରି । ସେ ଧନରେ ମୁଁ ଯାହା କରିବ ସେଥିରୁ କୌଣସି ସୁଖ ଓ ଶାନ୍ତି ପାଇପାରିବି ନାହିଁ । ତେଣୁ ଏ ଧନ ମୋର ଦରକାର ନାହିଁ । ମୋ ପାରିଶ୍ରମିକ ମୋ ପାଇଁ ପର୍ଯ୍ୟାପ୍ତ ।"

ଏଥର କିନ୍ତୁ ଅଶୋକ ଆଉ ଚୁପ୍ ହୋଇ ରହିପାରିଲା ନାହିଁ । ପୂର୍ବର ସେହି ସମସ୍ତ ଘଟଣା ବର୍ଣ୍ଣନା କରି ତା'ପରେ କହିଲା, "ଆପଣ ମୋତେ କୃପା କରି କ୍ଷମା କରନ୍ତୁ । ମୋର ଯାହା କିଛି ସମ୍ପତ୍ତି ତାହା ସବୁ ଆପଣଙ୍କର ।"

ଜଗନ୍ନାଥ ଆଶ୍ଚର୍ଯ୍ୟ ହୋଇ କହିଲା, "ଏହା ସତ ଯେ ସେଦିନ ମୁଁ ସେଠି ସ୍ନାନ କରୁଥିଲି । କିନ୍ତୁ ଯେଉଁ ବାକ୍ସଟି ତୁମେ ପାଇଲ ସେଇଟା ମୋର ନୁହେଁ । ମୁଁ ସେ ବାକ୍ସ ଖୋଲି ଦେଖି ବି ନଥିଲି । ବୋଧହୁଏ ସେହି ବାକ୍ସର ମାଲିକକୁ ବାଘ ଖାଇଯାଇଥିଲା । ତା'ପରେ ସେଇଟି ତୁମକୁ ମିଳିଲା । ସେଇଟା ତୁମର । ଏବେ ମୁଁ ଯାଉଛି । ମୋତେ ଅନେକ ଦୂର ଯିବାକୁ ପଡ଼ିବ ।" ଏ କଥା କହି ସେ ଚାଲିଗଲା ।

ଜଗନ୍ନାଥର କଥା ବାରଂବାର ଅଶୋକର କାନରେ ପ୍ରତିଧ୍ୱନିତ ହେଲା । ସେ ବୁଝିଗଲା ଯେ ସତ୍ୟ ସ୍ୱୀକାର କରିବା ଦ୍ୱାରା ତା' ମନ ହାଲୁକା ହୋଇପାରିଛି ।

କନକ ଘରେ ନ ଥିଲା ବେଳେ ଦିନେ ସେ ବାକ୍ସଟି ବାହାର କରି ସେଥିରେ ସୁନା ମୋହର ଭର୍ତ୍ତି କରି ଗ୍ରାମ ପଞ୍ଚାୟତ ଜମା ଦେଲା ଓ କହିଲା, "ଏତକ ଲୋକଙ୍କ ହିତରେ ଲାଗୁ ।" ଏହା ପରେ ସେ ବହୁତ ଶାନ୍ତି ପାଇଲା ।





# ଶୁଭଯାତ୍ରା

ବହୁଦିନ ତଳେ, ଯେତେବେଳେ ବ୍ରହ୍ମଦତ୍ତ କାଶୀ ନଗରୀରେ ରାଜୁତି କରୁଥିଲେ, ସେହି ସମୟରେ ବୋଧିସତ୍ତ୍ୱ ଏକ ବୈଶ୍ୟ ପରିବାରରେ ଜନ୍ମଗ୍ରହଣ କରିଥିଲେ ।

ଯୁବା ବୟସରେ ଉପନୀତ ହୋଇ ବୋଧିସତ୍ତ୍ୱ ତାଙ୍କ ପିତାଙ୍କ ପରିତ୍ୟକ୍ତ ବ୍ୟବସାୟ ନିଜ ହାତକୁ ନେଲେ । ଅନେକଗୁଡ଼ିଏ ଶଗଡ଼ରେ ଜିନିଷପତ୍ର ବୋଝେଇ କରି ତାଙ୍କୁ ଦୂର ଦୂରାନ୍ତର ଯାଇ ସେସବୁ ବିକ୍ରୟ କରିବାକୁ ପଡ଼ୁଥିଲା । ଦୂରବର୍ତ୍ତୀ କୌଣସି ସ୍ଥାନରୁ ଜିନିଷପତ୍ର କିଣି ସେସବୁ କାଶୀ ନଗରୀକୁ ଆଣି ସେ ବିକ୍ରୟ କରୁଥିଲେ ।

ସେତେବେଳେ କାଶୀ ନଗରୀରେ ଆଉ ଜଣେ ବଣିକ ଥିଲେ । ସେ ବଡ଼ ଈର୍ଷ୍ୟକ । ନିଜକୁ ଚତୁର ବୋଲି ଭାବୁଥିଲେ । ତାଙ୍କୁ ଏ କ୍ଷେତ୍ରରେ ମନ୍ଦମତି ବୋଲି କୁହାଯାଉ ।

ଥରେ ବୋଧିସତ୍ତ୍ୱ ପୂର୍ବଦିଗବର୍ତ୍ତୀ ଗୋଟିଏ ଦୂର ସହରକୁ ଯିବାକୁ ପ୍ରସ୍ତୁତ ହେଉଛନ୍ତି, ମନ୍ଦମତି କହିଲା, "ଆରେ, ମୁଁ ବି ତ ସେହି ସହରକୁ ଯିବାକୁ ବସିଛି ! ବର୍ଷକ ତଳୁ ମୁଁ ସେଥିପାଇଁ ପ୍ରସ୍ତୁତ ହେଲଣି !"

ଦୁଇ ବଣିକଦଳ ଏକ ସମୟରେ ଗୋଟିଏ ସ୍ଥାନକୁ ଗଲେ ଉଭୟଙ୍କର କ୍ଷତି ହୁଏ । ତେଣୁ ପରସ୍ପର ବୁଝାମଣାରେ ଆଗପଛ ହୋଇ ଯିବା ବଣିକ ଗୋଷ୍ଠୀ ଭିତରେ ପ୍ରଚଳିତ ବିଧି ଥିଲା ।

ବୋଧିସତ୍ତ୍ୱ କହିଲେ, "ଯଦି ଏପରି କଥା, ତେବେ ଆମେ ଦୁହେଁ କିଛିଦିନ ବ୍ୟବଧାନରେ ଯାତ୍ରାରମ୍ଭ କରିବା ଉଚିତ । ବର୍ତ୍ତମାନ ତୁମେ ସ୍ଥିର କର, ତୁମେ ଆଗେ ଯିବ ନା ମୁଁ ଆଗେ ଯିବ ?"



ମନ୍ଦମତି ମନେ ମନେ ଭାବିଲା, ଯିଏ ଆଗେ ଯିବ ତା'ର ଲାଭ। ପ୍ରଥମେ ଦୀର୍ଘ ରାସ୍ତାରେ ତା' ବଳଦଙ୍କ ପାଇଁ ଭଲ ଘାସ ମିଳିବ। ଲୋକେ ତା' ଜିନିଷପତ୍ର ପ୍ରଥମେ କିଣିନେବା ପରେ ଦ୍ୱିତୀୟ ବଣିକଠାରୁ କିଣିବା ସକାଶେ ଆଉ ଆଗ୍ରହ ଦେଖାଇବେ ନାହିଁ।

ଏଣେ ବୋଧିସତ୍ତ୍ୱ ନିଜ ଅଭିଜ୍ଞତାରୁ ଜାଣିଥାନ୍ତି, ପ୍ରଥମେ ଯିଏ ଯିବ, ତା' ପାଇଁ ଅନେକ ଅସୁବିଧା। ଦୀର୍ଘ ପଥରେ ପାଣିର ଅଭାବ ଥିଲେ ତାକୁ କୂଅ ମଧ୍ୟ ଖୋଳିବାକୁ ପଡ଼ିପାରେ। ବଳଦମାନେ ଥରେ ଚରିଗଲେ ଘାସ ଦୁଇଗୁଣ ଉଠିଥାଏ। ଦରଦାମ ମଧ୍ୟ ପ୍ରଥମବଣିକ ସ୍ଥିର କରିସାରିଥାଏ। ତେଣିକି ଦ୍ୱିତୀୟବଣିକ ପକ୍ଷରେ ଅଳ୍ପ ସମୟ ଭିତରେ କାମ ସମାଧାନ କରିବା ସହଜ। ଏପରିକି ରାସ୍ତାରେ ଗାତ ବା ପଥର ଥିଲେ ପ୍ରଥମ ଯାତ୍ରୀଦଳ ସେସବୁ ଅସୁବିଧା ଦୂର କରିସାରିଥାନ୍ତି।

ତେବେ ବୋଧିସତ୍ତ୍ୱ ନିଜ ତରଫରୁ କିଛି କହିଲେ ନାହିଁ। ମନ୍ଦମତି ଉପରେ ଛାଡ଼ିଦେଲେ।

"ଭାଇ, ମୁଁ ବର୍ଷେ ହେଲା ସେଠାକୁ ଯିବାକୁ ମନ କଲିଣି। ତେଣୁ ମୋତେ ପ୍ରଥମେ ଯିବାକୁ ଦେବା ତୁମର କର୍ତ୍ତବ୍ୟ।" ମନ୍ଦମତି କହିଲା।

"ତାହାହିଁ ହେଉ।" କହିଲେ ବୋଧିସତ୍ତ୍ୱ।

ମନ୍ଦମତି ଆନନ୍ଦିତ ହୋଇ ଯାତ୍ରା ପାଇଁ ପ୍ରସ୍ତୁତ ହେଲା। ପୂର୍ବଦଗର ସେ ଗନ୍ତବ୍ୟ ସହର ବହୁତ ଦୂର। ବାଟରେ ଗୋଟିଏ ବଣ ପଡ଼େ। ତା'ପରେ ପଡ଼େ ମରୁଭୂମି। ସେ ତେଣୁ ଯଥେଷ୍ଟ ପରିମାଣ ଖାଦ୍ୟଦ୍ରବ୍ୟ ଏବଂ ପିଇବା ପାଣି ଗାଡ଼ିରେ ବୋଝେଇ କଲା। ବୋଧିସତ୍ତ୍ୱଙ୍କ ଭଳି ତା'ର ମଧ୍ୟ ଅନେକଗୁଡ଼ିଏ ଗାଡ଼ି। ସବୁ ଧାଡ଼ିହୋଇ ଚାଲିଲେ। ଆଗ ଗାଡ଼ିରେ ବସିଲା ମନ୍ଦମତି।

କେତେଦିନ ଚାଲିବା ପରେ ଦୂରରେ ବଣ ଦେଖାଗଲା। ହଠାତ୍ ମନ୍ଦମତି ଦେଖିଲା ବିପରୀତ ଦିଗରୁ ରାଜପୋଷାକରେ ସାଜ ପିନ୍ଧି, ଗୋଟିଏ

ଅତି ସୁନ୍ଦର ଗାଡ଼ି ଆରୋହଣ କରି ଜଣେ ବ୍ୟକ୍ତି ଆସୁଛନ୍ତି । ମଦନମତିଙ୍କୁ ଅନାଇ ସେ ହସି କହିଲେ, "ବଣିକ ମହାଶୟ, ତୁମେ ଏତେ ପାଣି ବୃଥାରେ ବୋହି ନେଇଯାଉଛ କାହିଁକି ? ବଣ ଓ ବଣ ସେପାଖରେ ଭୀଷଣ ଭାବରେ ବର୍ଷା ହୋଇଛି । ସବୁ ପୋଖରୀ ପରିପୂର୍ଣ୍ଣ । ଝରଣାମାନ ପ୍ରବଳ ବେଗରେ ନିଜ ନିଜ ପଥରେ ମାଡ଼ିଚାଲିଛନ୍ତି । ଯେତେ ପାଣି ତୁମର ଲୋଡ଼ା ହେବ, ଯେଉଁ ମୁହୂର୍ତ୍ତରେ ଲୋଡ଼ା ହେବ, ସେତେ ପାଣି ସେହି ମୁହୂର୍ତ୍ତରେ ମିଳିଯିବ ।"

"ସତେ ? ଆପଣଙ୍କୁ ଧନ୍ୟବାଦ । ଏ ପାଣିତକ ଫୋପାଡ଼ିଦେଲେ ଆମ ଗାଡ଼ି ହାଲୁକା ହୋଇଯିବ ।" ଏହା କହି ମଦନମତି ନିଜର ସଞ୍ଚିତ ପାଣିତକ ଢାଳିଦେବାକୁ ତା' ଲୋକଙ୍କୁ ନିର୍ଦ୍ଦେଶ ଦେଲା । ତା'ପରେ ତା' ଗାଡ଼ିମାନ ବଣ ଭିତରେ ଅଦୃଶ୍ୟ ହୋଇଗଲେ ।

ଏ ଘଟଣାର ଠିକ୍ ମାସକ ପରେ ବୋଧିସତ୍ତ୍ୱ ଯାତ୍ରାରମ୍ଭ କଲେ । ଠିକ୍ ସେହି ସ୍ଥାନରେ ରାଜପୁରୁଷ ଭଳି ଦିଶୁଥିବା ସେ ବ୍ୟକ୍ତି ଉପସ୍ଥିତ ଦଳରୁ ଗାଡ଼ି ଚଢ଼ି ଆସି ତାଙ୍କୁ ଏକହିଁ କଥା କହିଲା । କିନ୍ତୁ ବୋଧିସତ୍ତ୍ୱ ଉତ୍ତର ଦେଲେ, "ଯେତେବେଳେ ଯଥେଷ୍ଟ ନିର୍ମଳ ପାଣି ଆମର ଦୃଷ୍ଟିଗୋଚର ହେବ, ସେତେବେଳେ ବରଂ ଏ ପାଣି ଆମେ ଢାଳିଦେବୁ ।"

ରାଜପୁରୁଷ ଚାଲିଗଲେ । ବୋଧିସତ୍ତ୍ୱଙ୍କର



କେତେକ କର୍ମଚାରୀ ତାଙ୍କୁ କହିଲେ, "ବାବୁ ଭୁଲ୍ଲାଟାରେ ଏତେ ପାଣି ବୋହିବା କାହିଁକି ?"

ବୋଧିସତ୍ତ୍ୱ କିଛି ନ କହି ହସିଲେ ଓ କହିଲେ, "ଆମ ବୋହିବା ବୃଥା ହେବ ନାହିଁ ।"

ସେମାନେ ବଣ ଭିତରେ ପଶିଲେ । କାହିଁ କେଉଁଠାରେ ଗୋଟାଏ ମଧ୍ୟ ପାଣିଭର୍ତ୍ତି ପୋଖରୀ ଆଖିରେ ପଡ଼ିଲା ନାହିଁ । ଝରଣାସବୁ ଶୁଖିଯାଇଥାନ୍ତି । ବଣ ପରେ ମରୁଭୂମି । ତା' ମଧ୍ୟ ଦେଇ ଯାଉ ଯାଉ ସେମାନେ ଦେଖିଲେ ଏକ ଭୟଙ୍କର ଦୃଶ୍ୟ । ମଇଳାଗାଡ଼ିସବୁ ପଡ଼ିଛନ୍ତି । ମଣିଷ ଓ ବଳଦ ସମସ୍ତଙ୍କ କଙ୍କାଳ ବିକ୍ଷିପ୍ତ ହୋଇ ପଡ଼ିଛି । ପଣ୍ୟଦ୍ରବ୍ୟ ସବୁ ସେମିତି ବୋଝେଇ ରହିଛି ।

ବୋଧିସତ୍ତ୍ୱ ଦୁଃଖିତସ୍ୱରରେ କହିଲେ, "ଇଏ ନିଶ୍ଚେ ସେ ରାଜପୁରୁଷବେଶୀ ବ୍ୟକ୍ତି ଦ୍ୱାରା ପ୍ରତାରିତ ହୋଇ ପାଣିତକ ଫୋପାଡ଼ିଦେଇଥିଲେ । ପ୍ରବଳ ତୃଷ୍ଣାରେ ପ୍ରାଣ ହାରିଛନ୍ତି ।"

"ସେ ରାଜପୁରୁଷ କାହିଁକି ଏପରି ପ୍ରତାରଣା କଲା ?" ବୋଧିସତ୍ତ୍ୱଙ୍କ ଲୋକେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ସେ ରାଜପୁରୁଷବେଶୀ ବ୍ୟକ୍ତି ଜଣେ ଯକ୍ଷ । ଏକ ନିମ୍ନ ଜାତିର ଯକ୍ଷ ଅଛନ୍ତି, ଯେଉଁମାନେ ମଣିଷଙ୍କ ରକ୍ତ ଶୋଷଣ କରନ୍ତି । କିନ୍ତୁ ସେ ଯକ୍ଷ ମଣିଷ ନିଶ୍ଚେଷ୍ଟ ହୋଇ ମୃତପ୍ରାୟ ପଡ଼ିରହିଲେ ଯାଇ ତାହା କରିପାରନ୍ତି । ସେଥିପାଇଁ ସେ ଯକ୍ଷ ଆମକୁ ବି ପ୍ରତାରିତ କରିବାକୁ ଚେଷ୍ଟା କରୁଥିଲା । ମୁଁ ଦେଖିଲି ଦୂରରେ ମେଘ ଉଠାଇବାର ଆମେ ଦେଖିନାହୁଁ, ଘଡ଼ଘଡ଼ି ଶୁଣିନାହୁଁ । ଏତେ ପ୍ରବଳ ବର୍ଷା କପରି ହୋଇଥିବ ? ତେଣୁ ମୁଁ ତା' କଥାରେ କାନ ଦେଲିନାହିଁ ।" ବୋଧିସତ୍ତ୍ୱ ଉତ୍ତର ଦେଲେ ।

ସେ ମଇଳାଗାଡ଼ି ପଡ଼ିରହିଥିବା ପଣ୍ୟଦ୍ରବ୍ୟତକ ନିଜ ଗାଡ଼ିରେ ବୋଝେଇ କରି ଅଗ୍ରସର ହେଲେ ।





ବୁଦ୍ଧଚରିତ—୨

## ମହତ୍ ଅନ୍ୱେଷଣ

"ରାଜପୁତ୍ର ଯେପରି କୌଣସି ଦୁଃଖପୂର୍ଣ୍ଣ କାହାଣୀ ଶୁଣିବେ ନାହିଁ, ଯେମିତି କିଛି ବିଷାଦମୟ ଦୃଶ୍ୟ ଦେଖିବାକୁ ପାଇବେ ନାହିଁ !" ଏହା ହେଲା ରାଜା ଶୁଦ୍ଧୋଦନଙ୍କ ଆଦେଶ । ନୃତ୍ୟଗୀତ ଉପଭୋଗ କରି ସିଦ୍ଧାର୍ଥ ଯେପରି ସର୍ବଦା ଆମୋଦିତ ରହିବେ, ରାଜା ସେହି ବ୍ୟବସ୍ଥା କରିଦେଲେ ।

ସିଦ୍ଧାର୍ଥଙ୍କ ପତ୍ନୀ ଯଶୋଧାରା ଏକ ପୁତ୍ରସନ୍ତାନ ଜନ୍ମ ଦେଲେ । ସିଦ୍ଧାର୍ଥ ଅନେକ ସମୟରେ ବୀତସ୍ପୃହ ରହୁଥିବା ହେତୁ ରାଜା ଶୁଦ୍ଧୋଦନ ଚିନ୍ତା କରୁଥିଲେ । ବର୍ତ୍ତମାନ ସିଦ୍ଧାର୍ଥଙ୍କ ପୁଅ ହେବାରୁ ସେ ଧରିନେଲେ ଯେ ଏଣିକି ସିଦ୍ଧାର୍ଥ ସଂସାରରେ ବାନ୍ଧିହୋଇ ରହିବେ ।





ଦିନେ ସିଦ୍ଧାର୍ଥ ଏକ ଦୂରବର୍ତ୍ତୀ ଉଦ୍ୟାନକୁ ଯିବା ପଥରେ ଜଣେ ବୃଦ୍ଧଙ୍କୁ ଦେଖିଲେ ପରେ ପରେ ତାଙ୍କ ଆଖିରେ ପଡ଼ିଲେ ଜଣେ ରୋଗଗ୍ରସ୍ତ ଲୋକ ଓ ଏକ ଶବ । ସେ ଆଶ୍ଚର୍ଯ୍ୟ ହେଲେ । ମଣିଷର ଏଭଳି ଅବସ୍ଥା ହୁଏ ବୋଲି ସେ ଜାଣି ନ ଥିଲେ ।



ଆଉ ଥରେ ଏକ ଉଦ୍ୟାନ ଅଭିମୁଖେ ଗଲାବେଳେ ସେ ଜଣେ ସନ୍ନ୍ୟାସୀଙ୍କୁ ଦେଖିଲେ । ତାଙ୍କ ସାରଥି ଚନ୍ନ କହିଲେ କି କୌଣସି ବ୍ୟକ୍ତି ବାର୍ଦ୍ଧକ୍ୟ, ବ୍ୟାଧି ଏବଂ ମୃତ୍ୟୁରୁ ଏଡ଼ାଇ ପାରେ ନାହିଁ । ସନ୍ନ୍ୟାସୀ ସମ୍ପର୍କରେ ଚନ୍ନ କହିଲେ କି ସେ ସଂସାର ସହିତ ସମସ୍ତ ବନ୍ଧନ ତୁଟାଇଦେଇଛନ୍ତି ।

ସିଦ୍ଧାର୍ଥ ଏ ନୂତନ ଅଭିଜ୍ଞତା ଉପରେ ଗମ୍ଭୀର ଚିନ୍ତା କରିବାକୁ ଲାଗିଲେ ମଣିଷ କାହିଁକି କଷ୍ଟ ପାଏ ? ଯଦି ସଂସାର ମଣିଷକୁ ସନ୍ତୋଷ ଦେଇପାରୁଥାନ୍ତା, ତେବେ ମଣିଷ ସନ୍ନ୍ୟାସୀ ହୁଏ କାହିଁକି ? ଏସବୁ ପ୍ରଶ୍ନର ଉତ୍ତର ପାଇବା ମାନସରେ ଏକ ମଧ୍ୟ-ରାତିରେ ସେ ନଗର ତ୍ୟାଗ କଲେ ।





ନଗରର ଦ୍ୱାରଦେଶରେ ସେ ଗୋଟିଏ ଅଦ୍ଭୁତ ଆଧିଭୌତିକ ଶକ୍ତିକୁ ଭେଟିଲେ । ସେ କହିଲା, "ରାଜପୁତ୍ର ! ତୁମେ ସଂସାର ଛାଡ଼ି ଯାଅ ନାହିଁ । ତୁମକୁ ମୁଁ ଆଣିଦେବି ଅମାପ ଧନ, ବ୍ୟାପକ ଖ୍ୟାତି । ତୁମେ ହେବ ରାଜଚକ୍ରବର୍ତ୍ତୀ ।" ସେ ଶକ୍ତିର ନାମ ମାର । ସତ୍ୟର ସନ୍ଧାନୀମାନଙ୍କୁ ବିପଥଗାମୀ କରିବା ତା'ର କାମ ।

ସିଦ୍ଧାର୍ଥ ଅଶ୍ୱାରୋହଣ କଲେ ଓ ତାଙ୍କ ଅନୁଗତ ସେବକ ଚନ୍ନଙ୍କୁ ତାଙ୍କୁ ଅନୁସରଣ କରିବାକୁ କହିଲେ । ରାଜଧାନୀର ଉପକଣ୍ଠରେ ଥିଲା ଏକ ଅରଣ୍ୟ । ସେ ସେହିଠାରେ ଅଶ୍ୱରୁ ଅବତରଣ କରି ଅଶ୍ୱ ସହ ଚନ୍ନଙ୍କୁ ନଅରକୁ ଫେରିଯିବାକୁ ନିର୍ଦ୍ଦେଶ ଦେଲେ । ନିଜର ଦୀର୍ଘକେଶ ସେ ଏକ ତୀକ୍ଷ୍ଣ ଛୁରିକା ସାହାଯ୍ୟରେ କାଟିପକାଇଲେ ।





ଚନ୍ନ ରାଜନଅରରେ ପହଞ୍ଚିବା ବେଳକୁ ପ୍ରଭାତ । ସେ ରାଜରାଣୀଙ୍କୁ ସିଦ୍ଧାର୍ଥଙ୍କ ରାଜ୍ୟତ୍ୟାଗ ସମ୍ବାଦ ଦେଲେ । ସେତେବେଳକୁ ଅରଣ୍ୟର ବିପରୀତ ଦିଗରେ ପହଞ୍ଚି ସିଦ୍ଧାର୍ଥ ତାଙ୍କର ସମସ୍ତ ରାଜକୀୟ ପୋଷାକ ଜଣେ ଭିଖାରୀକୁ ଦେଇ ନିଜେ ତା' ପୋଷାକ ପିନ୍ଧିସାରିଥାନ୍ତି ।

ସେ ସମୟର ବିଖ୍ୟାତ ସାଧୁସନ୍ଥମାନଙ୍କୁ ସିଦ୍ଧାର୍ଥ ଭେଟିଲେ । ସେମାନେ ନିଜ ନିଜ ଦର୍ଶନ ସିଦ୍ଧାର୍ଥଙ୍କୁ ଶୁଣାଇଲେ; କିନ୍ତୁ ସିଦ୍ଧାର୍ଥଙ୍କର ଧାରଣା ହେଲା ଯେଉଁ ସବୁ ପ୍ରଶ୍ନର ଉତ୍ତର ସେ ଖୋଜୁଛନ୍ତି, ସେସବୁ ତାଙ୍କୁ ନିଜେ ବାହାର କରିବାକୁ ପଡ଼ିବ । ସେ ତପସ୍ୟାର ଅନୁକୂଳ ସ୍ଥାନଟିଏ ଖୋଜିବାକୁ ଲାଗିଲେ ।





ଉରୁବେଲରେ ପହଞ୍ଚି ସିଦ୍ଧାର୍ଥ ଗୋଟିଏ ବରଗଛ ମୂଳରେ ସ୍ଥାନ ଗ୍ରହଣ କଲେ ଓ ଗମ୍ଭୀର ଧ୍ୟାନରେ ହେଲେ ନିମଗ୍ନ । ପାଞ୍ଚ-ଜଣ ବୈରାଗୀ ତାଙ୍କୁ ଦେଖି ସେ ଯେ ଜଣେ ମହନୀୟ ଆତ୍ମା, ଏହା ବୁଝି-ପାରିଲେ । ସେମାନେ ତାଙ୍କୁ ଜଗି-ରହି ତାଙ୍କର ହେପାଜତ ନେଲେ ।

ସମସ୍ତ ଆସିଲା ଯେତେବେଳେ ବୁଦ୍ଧ ଉପଲବ୍ଧି କଲେ କି ଶରୀରକୁ କଷ୍ଟ ଦେଇ ସେ ସତ୍ୟର ସନ୍ଧାନ ପାଇବେ, ଏପରି କିଛି କଥା ନାହିଁ । ପାର୍ଶ୍ୱବର୍ତ୍ତୀ ଏକ ଘରେ ରହୁଥିବା ସୁଜାତା ନାମ୍ନୀ ଯୁବତୀ ବୁଦ୍ଧଙ୍କୁ ଦେବତା ଜ୍ଞାନ କରି ଖାଦ୍ୟ ପରଷିଲା ଓ ବୁଦ୍ଧ ତାହା ଗ୍ରହଣ କଲେ । ପାଞ୍ଚ ବୈରାଗୀ ବୁଦ୍ଧ ପଥଚ୍ୟୁତ ହେଲେ ଭାବି ପଳାଇଲେ ।





ନଦୀକୂଳସ୍ଥ ଗୋଟିଏ ବୋଧିବୃକ୍ଷ ତଳକୁ ଯାଇ ବୁଦ୍ଧ ପୁନର୍ବାର ଧ୍ୟାନମଗ୍ନ ହେଲେ । ଏକ ପୂର୍ଣ୍ଣିମା ରାତ୍ରରେ ହଠାତ୍ ବୁଦ୍ଧ ଅନ୍ତରରେ ଅନୁଭବ କଲେ ଅନିର୍ବଚନୀୟ ଶାନ୍ତି ଓ ଏକ ଦିବ୍ୟ ଉଦ୍‌ଭାସନ । ସେ ବୁଝିଲେ ଯେ ସେ ଲକ୍ଷ୍ୟରେ ଉପନୀତ ହୋଇଛନ୍ତି—ହୋଇଛନ୍ତି ବୁଦ୍ଧ ।



# ଅଜ୍ଞାତ ଚୋର

ରତ୍ନନାଭ ନାମକ ଜଣେ ସୁନାବ୍ୟବସାୟୀଙ୍କ ପାଖରେ ବିଠଲ ନାମରେ ଜଣେ କର୍ମଚାରୀ ଥାଏ । ସେ ଖୁବ୍ କାର୍ଯ୍ୟଦକ୍ଷ ଓ ବିଶ୍ୱାସୀ ଥିଲା । ସେ ଜାଣିଥିଲା ମାଲିକର ତା' ଉପରେ ଗଭୀର ବିଶ୍ୱାସ । ହଠାତ୍ ଥରେ ତା' ମନରେ ଏକ ଦୁର୍ବୁଦ୍ଧି ଦେଖା ଦେଲା; ଭାବିଲା ସେହି ବିଶ୍ୱାସ ବଳରେ ସେ ଗୋଟାଏ ବଡ଼ ଜିନିଷ ଚୋରି କରି ନେଇପାରନ୍ତା । ଦିନେ ଦୋକାନ ବନ୍ଦ ହେବା ବେଳେ ସେ ଗୋଟାଏ ରତ୍ନହାର ଲୁଚାଇ ଘରକୁ ନେଇଗଲା ।

ପରଦିନ ଦୋକାନରେ ପ୍ରବେଶ କରୁ କରୁହିଁ ରତ୍ନନାଭ ଜାଣିନେଲା ଯେ ରତ୍ନହାର ହଜି-ଯାଇଛି । ସେଇଟା ଜମିଦାରଙ୍କ ଘର ପାଇଁ ତିଆରି ହୋଇଥିଲା ସ୍ୱତନ୍ତ୍ର ଭାବରେ । ଯେଉଁ ବାକ୍ସରେ ସେଇଟା ଥିଲା, ସେ ବାକ୍ସଟି ସୁରକ୍ଷିତ ଅଛି ଅଥଚ ହାର ନାହିଁ ।

ରତ୍ନନାଭ ଆଶ୍ଚର୍ଯ୍ୟ ହେଲା । ଯେହେତୁ ଦୋକାନରେ ଏପରି ଚୋରି ପ୍ରଥମ ଥର ପାଇଁ ହେଲା । ଦୋକାନରେ ବିଠଲ ବ୍ୟତୀତ ଆଉ ଦୁଇ କର୍ମଚାରୀ ମଧ୍ୟ ଥିଲେ । ସେମାନେ ମଧ୍ୟ କେତେ ବର୍ଷ ହେବ ସେଠାରେ ବଡ଼ ବିଶ୍ୱାସର ସହ କାମ କରୁଛନ୍ତି । ବିଠଲହିଁ ନୂଆ, ହେଲେ ରତ୍ନନାଭ ଅବିଶ୍ୱାସ କଲା ନାହିଁ । କିନ୍ତୁ ବିଠଲର ଗତିବିଧି ଉପରେ ସେ ଆଖି ରଖିଲା ଓ ଦେଖିଲା ତା' ମନରେ ଚୋରି କରିବାର କୌଣସି ପ୍ରବୃତ୍ତି ନାହିଁ । ତେଣୁ ସେ କାହା ଉପରେ ସନ୍ଦେହ ନ କରି ଚୁପ୍‌ଚାପ୍ ରହିଗଲା; ତେବେ ତା' ପାଇଁ ଥିଲା ଏହା ଏକ ମହା ସଙ୍କଟ । ସେ ମନେ ମନେ ଠିକ୍ କଲା ଏଇ ତିନିଜଣଙ୍କ ଉପରେ ଟିକିଏ ଲକ୍ଷ୍ୟ ରଖିବ ।

ଉମାରାଣୀ



ଏମିତି କିଛିଦିନ ବିତିଗଲା । ଦିନେ ଧନପତି ନାମରେ ଅନ୍ୟ ଜଣେ ସୁନାବ୍ୟବସାୟୀ, ରତ୍ନନାଭର ବନ୍ଧୁ, ଆସି ସେଠାରେ ପହଞ୍ଚିଲା, ଓ କହିଲା, "ତୁମେ ଶୁଣିଛ ଯୁ ଭିତରେ ମୋ ଦୋକାନରୁ ଅଳଙ୍କାର ଚୋରି ହୋଇଥିଲା ?"

"ତୁମ ଦୋକାନରୁ ଚୋରି ହୋଇଥିଲା ? କ'ଣ ଚୋର ଧରାପଡ଼ିଲା ?" ଆଶ୍ଚର୍ଯ୍ୟ ହୋଇ ରତ୍ନନାଭ ପଚାରିଲା ।

"ଧରାପଡ଼ିବନି କିପରି ? ଠିକ୍ ମୁଁ ଦୋକାନ ବନ୍ଦ କରି ତାଲା ଦେବାକୁ ଯାଉଛି ଜାଣିପାରିଲି ଗୋଟାଏ ହାର ଚୋରି ଯାଇଛି । ମୁଁ ସେଇଠି କର୍ମଚାରୀମାନଙ୍କ ଲୁଗାପଟା ଓ ଜିନିଷପତ୍ର ତଲାସ କଲି । ବହୁତ ଦିନର ବିଶ୍ୱାସୀ କର୍ମଚାରୀ ରଙ୍ଗନାଥ ଲୁଗାରେ ବାନ୍ଧି ଲୁଚାଇ ଥିଲା, ଏଇତ କାଲିର ଘଟଣା । ଜାଣ ମୋର ତା' ଉପରେ କି ଗଭୀର ବିଶ୍ୱାସ ଥିଲା ?" ଧନପତି କହିଲା ।

"ତୁମେ ତା'ପରେ ତାକୁ କ'ଣ ପୋଲିସ୍‌ରେ ଦେଲ ?" ରତ୍ନନାଭ ପଚାରିଲା ଓ ତା'ର କର୍ମଚାରୀମାନଙ୍କ ଉପରେ ଲକ୍ଷ୍ୟ ରଖିଲା ।

"ଏତେ କଠୋର ଦଣ୍ଡ କାହିଁକି ଦେବି ? ତାକୁ ଖୁବ୍ ମାଡ଼ ଦେଇ ବିଦା କରିଦେଲି । ଗହଣା ତ ମିଳିଗଲା ।" ଧନପତି କହିଲା ।

"ଆହା, କାହିଁକି ଛାଡ଼ିଦେଲ ? ମୁଁ ତୁମ ସ୍ଥାନରେ ଥିଲେ ପିଟିଥାନ୍ତି ପୁଣି ପୋଲିସ୍ ହାତରେ ମଧ୍ୟ ଦେଇଥାନ୍ତି ।" ରତ୍ନନାଭ କହିଲା ।

ଏକଥା ଶୁଣିବା ମାତ୍ରେ ବିଠଲର ହାତରୁ ଗୋଟାଏ ଜିନିଷ ତଳେ ପଡ଼ିଗଲା । ବିଠଲର ଏପରି ପ୍ରତିକ୍ରିୟା ଯୋଗୁ ରତ୍ନନାଭ ମନରେ ବିଠଲ ପ୍ରତି ସନ୍ଦେହ ହେଲା । କାରଣ ବିଠଲ ଦୁଇବ୍ୟବସାୟୀଙ୍କ କଥାବାର୍ତ୍ତା ବେଶ୍ ମନଯୋଗ ଦେଇ ଶୁଣୁଥିଲା ।

ତା'ପରେ ଧନପତି ଚାଲିଗଲା । କିନ୍ତୁ ବିଠଲ ମନ ପୋଲିସ୍‌ର ଭୟରେ ଘାରି ହେଲା । ତା' ଆଖି ଆଗରେ କାରାଗାରର ଦୃଶ୍ୟ ନାଚିଲା ।

ମନର ଏପରି ଅବସ୍ଥାରେ ସେ ଆଉ ସେଠାରେ ବେଶୀ ସମୟ ରହିପାରିଲା ନାହିଁ । ନିଜର

ମାଲିକଙ୍କୁ କହିଲା, "ବାବୁ, ଆଜି ମୋ ଦେହ ଭଲ ନାହିଁ; ମୋତେ ଛୁଟି ଦିଅନ୍ତୁ ।"

ରତ୍ନନାଭ ଆଶ୍ଚର୍ଯ୍ୟ ହେବାର ଅଭିନୟ କରି କହିଲା, "ତୁମେ ହଠାତ୍ ଏପରି କ'ଣ କହୁଛ ? ଯଦି ଦେହ ଖରାପ ଥିଲା ତ କାମକୁ କାହିଁକି ଆସିଲ ? ଛୁଟିପାଇଁ ତ ମୁଁ ମନା କରୁନାହିଁ ।"

ବଠଲର ଚେହେରା ଦେଖିଲେ ଜଣାପଡ଼ୁଥିଲା ଯେ ସେ କୌଣସି ପ୍ରଲୋଭନରେ ପଡ଼ି ରତ୍ନହାର ନେଇଛି । ତେଣୁ ବର୍ତ୍ତମାନ ଏପରି ବ୍ୟବହାର କରିବା ଦରକାର ଯେପରି ଚୋର ହୋଇଛି ବୋଲି କେହି ଜାଣିବେ ନାହିଁ; ଅଥଚ ବଠଲ ନିଜେ ନିଜର ଭୁଲ ସଂଶୋଧନ କରିନେବ । ଏପରି ଭାବି ରତ୍ନନାଭ କହିଲା, "ଶୁଣ ବଠଲ, ମୁଁ ତୁମକୁ ଆଜି ଗୋଟିଏ କାମ ଦେବି ।" ଏ କଥା କହି ସେ ଟିକିଏ ଚୁପ୍ ହୋଇ ବସିଲା ।

ଏକଥା ଶୁଣି ବଠଲର ମୁହଁ ଆହୁରି ଫିକା ପଡ଼ିଗଲା । ସେ ତା'ର ମାଲିକର ମୁହଁକୁ ସିଧା ଚାହିଁ ମଧ୍ୟ ପାରିଲା ନାହିଁ ।

ତା'ପରେ ରତ୍ନନାଭ ପୁଣି କହିଲା, "ଏମିତି କିଛି ଜରୁରୀ କଥା ନୁହେଁ । ତୁମେ ବହୁତ ପରିଶ୍ରମ କରୁଛ ଓ ସବୁ କାମ ବିଶ୍ୱାସର ସହିତ କରୁଛ । ତେଣୁ ଆଜିଠାରୁ ତୁମର ଦରମା ପଚିଶ ଟଙ୍କା ବଢ଼ାଇଦେଲି ।"

ବଠଲ ତା' ମାଲିକ ମୁହଁକୁ ଏକ ଶୂନ୍ୟ ଦୃଷ୍ଟିରେ କେବଳ ଚାହିଁ ରହିଲା ଯେପରି ମାଲିକର କଥାରେ ତା'ର ବିଶ୍ୱାସ ହେଉ-



ନାହିଁ । ହୁଏତ ମାଲିକ ଜାଣି ଜାଣି ଏପରି ବ୍ୟବହାର କରୁଛନ୍ତି ପରେ ବେଶୀ କଷ୍ଟ ଦେବ ବୋଲି । ଯାହାହେଉ ସେ ଉପଲବ୍ଧି କଲା ଚୋରି କରି ସେ କେଡ଼େ ବଡ଼ ଭୁଲ କରିଛି ।

ରତ୍ନନାଭ ପଚାରିଲା, "କିଛି କହୁନାହଁ ଯେ ?"

"ଆପଣଙ୍କ ଦୟା ।" ବିଠଲ ଏତିକି କହିଲା ।

"ଠିକ୍ ଅଛି । ଯାଅ ତୁମ ଦେହ ସମ୍ପୂର୍ଣ୍ଣ ଭଲ ହେଲା ପରେ କାମକୁ ଆସିବ । ହଁ ଶୁଣ, ଜମିଦାରଙ୍କ ରତ୍ନହାର ମୁଁ ତାଙ୍କୁ ଆଜି ଦେବି ବୋଲି ସମୟ ଦେଇଥିଲି । ରତ୍ନହାରଟି ନେଇ-ଯାଅ; ତାକୁ ଜମିଦାରଙ୍କୁ ଦେଇ ତାଙ୍କଠାରୁ ମଜୁରି ଟଙ୍କା ନେଇ ରଖିଥିବ । ପୁଣି ଯେବେ ତୁମେ କାମକୁ ଆସିବ, ସେତେବେଳେ ଟଙ୍କା ନେଇ ଆସିବ ।" ରତ୍ନନାଭ କହିଲା ।

ବିଠଲକୁ ଲାଗିଲା ତା' ଦେହରେ ଜୀବନ ପଶିଲା । ତା' ମନ ଭିତରେ ଏଇ ଦୃଢ଼ତା ଆସିଲା ଯେ ମାଲିକ ଜାଣେନା ବାକ୍ସ ଭିତରେ ରତ୍ନହାର ନାହିଁ ବୋଲି । ସେ ଖାଲି ବାକ୍ସଟା ନେଇ ଉତ୍ସାହର ସହିତ କହିଲା, "ଯାହା ଆପଣଙ୍କ ଆଜ୍ଞା ।" ତା'ପରେ ଶୀଘ୍ର ଶୀଘ୍ର ଦୋକାନରୁ ବାହାରି ଚାଲିଗଲା ।

ତା'ପରେ ବିଠଲ ସିଧା ନିଜ ଘରେ ଯାଇ ପହଞ୍ଚିଲା । ଚୋରି କରିଥିବା ହାର ସେ ଖାଲି ବାକ୍ସରେ ରଖିଲା । ଜମିଦାରଙ୍କୁ ହାର ଦେଇ ମଜୁରି ଟଙ୍କା ଆଣିଲା । ପରଦିନ ଦୋକାନକୁ ଯାଇ ରତ୍ନନାଭ ହାତରେ ଟଙ୍କା ଦେଲା ।

ବିଠଲକୁ ଦେଖିବା ମାତ୍ରେ ରତ୍ନନାଭ ଅଳ୍ପ ହସି କହିଲା, "ଶୁଣ ତୁମର ରୋଗ ଭଲ ହୋଇ-ଗଲାଣି ନା ?" ସେତେବେଳେ ବିଠଲ ବୁଝି-ପାରିଲା ଯେ ସବୁକଥା ତା'ର ମାଲିକ ଜାଣନ୍ତି ।

ସେ ଭାବିଲା ତେବେ ବର୍ତ୍ତମାନ ପ୍ରକୃତ କଥା ଆଉ ଲୁଚାଇ ଲାଭ ନାହିଁ । ତେଣୁ କହିଲା, "ହଁ ମାଲିକ, କାଲିଠାରୁ ହିଁ ମୋର ଶରୀର ଭଲ ହୋଇଯାଇଛି ।"



# ଅଧିକାର !

କନକଦାସ ଓ ହରିଦାସ ଦୁଇ ପ୍ରତିବେଶୀ । ହରିଦାସ ଯେପରି କଳିହୁଡ଼ା, ସେହିପରି ଈର୍ଷୁକ ।

କନକଦାସ ଶାନ୍ତ ସ୍ୱଭାବର ଲୋକ । ତଥାପି ବାଧ୍ୟ ହୋଇ ଥରେ ଥରେ ତାକୁ ହରିଦାସ କଥାରେ ଜବାବ ଦେବାକୁ ପଡ଼ୁଥାଏ ।

କନକଦାସ ବାଡ଼ିରେ ଗୋଟାଏ ଭଲ ନଡ଼ିଆ ଗଛ ଥାଏ । କିନ୍ତୁ ଗଛଟି ହରିଦାସର ବାଡ଼ି ଭିତରକୁ ନଇଁଯାଇଥାଏ । ପାଚିଲା ନଡ଼ିଆ ହରିଦାସର ବାଡ଼ି ଭିତରେ ପଡ଼େ ଏବଂ ହରିଦାସ ସେସବୁ ରଖିନିଏ । କନକଦାସ କିଛି କହେ ନାହିଁ ।

କିନ୍ତୁ ଲୋଭୀ ହରିଦାସ ଥରେ ନଡ଼ିଆ ଗଛରେ ଫଳ ପଇଡ଼ ଅବସ୍ଥାରେ ଥିଲା ବେଳେ କାନ୍ଧି କାଟିନେଲା । କନକଦାସ ସେ ଅନ୍ୟାୟ ସହି ନ ପାରି ପଞ୍ଚାୟତରେ ନାଲିଶ କଲା । ପଞ୍ଚାୟତ ସଭାପତି କହିଲେ ହରିଦାସକୁ, "ଇଏ ତୁମର ବଡ଼ ଅନ୍ୟାୟ । ଅନ୍ତତଃ ତା' ପଇଡ଼ତକ ତାକୁ ଫେରାଇଦିଅ ।"

"ବାବୁ, ଗଛର ମୂଳ ତା'ର ହୋଇପାରେ । କିନ୍ତୁ ଅଗ୍ରଭାଗ ମୋ ଘର ଉପରକୁ ନଇଁ ଆସିଥିବାରୁ ତାକୁ ନେଇ ମୁଁ ଯାହା ଇଚ୍ଛା ତାହା କରିବି ।" ହରିଦାସ ଜବାବ ଦେଲା ।

"ଦେଖ, ଏଇଟା କ'ଣ କଥା ପରି କଥା ? ସଭାପତି ପଚାରିଲେ ।

"ହଁ ଆଜ୍ଞା, ମୋର ଯାହା କହିବାର ମୁଁ କହିଦେଲି ।" ହରିଦାସ ଜବାବ ଦେଲା ।

ସଭାପତି କନକଦାସକୁ କହିଲେ, "ତୁମେ ଗଛର ମୂଳର ମାଲିକ । ମୂଳ କାଟିଦିଅ । ଗଛର ଅଗ୍ରଭାଗ ହରିଦାସ ଘର ଉପରେ କଚଡ଼ିପଡ଼ୁ ଓ ତା' ଘରର କ୍ଷତି ହେଉ । ସେଥିପାଇଁ ତୁମେ ଦାୟୀ ହେବ ନାହିଁ ।"

ଏଥର ହରିଦାସ ପଇଡ଼ତକ ଆଣି କନକଦାସକୁ ଦେଇଦେଲା ।





## ନିଦୁଆର ଭାଗ୍ୟ !

ପିଲାଟିର ନାମ ସୋମନାଥ । କିନ୍ତୁ ତାକୁ ସମସ୍ତେ ଡାକନ୍ତି ନିଦୁଆ ସୋମନାଥ । ତା'ର କାରଣ, ସୁଯୋଗ ପାଇବା ମାତ୍ରେ ସେ ଶୋଇପଡ଼େ । ତା' ଆଖିକୁ ଏତେ ନିଦ କାହିଁ ଆସେ ସେ କଥା ବିଧାତା ଜାଣେ ।

ତା' ବାପାଙ୍କ ବିୟୋଗ ହେଲା ବେଳକୁ ସୋମନାଥର ବୟସ ପନ୍ଦର । ସେ ନା ମନ ଦେଇ ପାଠ ପଢ଼ିଲା, ନା କାମଦାମ କଲା । ତା' ମା' ଜଣକ ଘରେ କାମ କରି କିଛି ପଇସା ଆଣୁଥାନ୍ତି । ବାଡ଼ରେ ପନିପରିବା ହେଉଥାଏ ଖଣ୍ଡିଏ ଜମି ଭାଗରେ ଲାଗିଥାଏ । ମା' ପୁଅ କୌଣସି ପ୍ରକାରେ ଚଳିଯାଉଥାନ୍ତି ।

ସେ ଅଞ୍ଚଳରେ ହୀରାଲାଲ ନାମରେ ଜଣେ ବିଶିଷ୍ଟ ବଣିକ ଥିଲେ । ସେ ସାଧୁ ବ୍ୟବସାୟୀ ହିସାବରେ ସମସ୍ତଙ୍କ ବିଶ୍ୱାସ ଅର୍ଜନ କରିଥିଲେ । ବୋଇତ ନେଇ ମଧ୍ୟେ ମଧ୍ୟେ ସୁବର୍ଣ୍ଣ ଦ୍ୱୀପକୁ ଯାଉଥାନ୍ତି । ଆହୁରି ବି କୌଣସି କୌଣସି ଦୂର ବନ୍ଦରରେ ବେପାର କରୁଥାନ୍ତି । ମଧ୍ୟେ ମଧ୍ୟେ ତାଙ୍କ ସାଥିରେ ଅନ୍ୟ ବେପାରିମାନେ ମଧ୍ୟ ଯାଉଥାନ୍ତି ।

ସେଥର ସେ ବୋଇତ ଧରି ବାହାରିବା ବେଳକୁ ସୋମନାଥକୁ ତା' ମା' ପାଞ୍ଚଗୋଟି ଟଙ୍କା ଦେଇ କହିଲେ, "ହୀରାଲାଲଙ୍କୁ ଏ ଟଙ୍କା ଦେଇ କହ, ସେ ସୁବର୍ଣ୍ଣ ଦ୍ୱୀପରୁ ତୋ ପାଇଁ କିଛି ଗୋଟାଏ ନେଇ ଆସିବେ ।" ମା' ଭାବିଥିଲେ, ହୀରାଲାଲ ଯାହା ଆଣିଦେବେ, ତାକୁ ଏ ଦେଶରେ ବିକିକରି କିଛି ଲାଭ ମିଳିପାରିବ ।

ସୋମନାଥ ସେତିକି କରିବାକୁ ପ୍ରସ୍ତୁତ ନ ଥିଲା । ତେବେ ମା' ବାରଂବାର କହିବାରୁ ସେ ଗଲା ।

(ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ)

ହୀରାଲାଲଙ୍କୁ ଯେତେବେଳେ ସେ ପାଞ୍ଚଟଙ୍କା ଦେଇ ତା' ପାଇଁ କିଛି ନେଇଆସିବାକୁ କହିଲା, ହୀରାଲାଲ ହସି ଉଠିବାକୁ ଯାଉଥିଲେ । ତାଙ୍କର ଲକ୍ଷ ଲକ୍ଷ ଟଙ୍କାର କାରବାର । ପାଞ୍ଚଟଙ୍କାରେ ସେ କ'ଣ ଆଣିବେ ? ତେବେ ସୋମନାଥ ପ୍ରତି ତାଙ୍କର ଦୟା ହେଲା । ସେ ଟଙ୍କା ପାଞ୍ଚୋଟି ରଖିନେଲେ ।

"କ'ଣ ପାଞ୍ଚଟଙ୍କାରେ ମଧ୍ୟ ଜଣେ ଆପଣଙ୍କର ବ୍ୟବସାୟରେ ଅଂଶୀଦାର ହୋଇ ପାରିଲା ?" ତାଙ୍କ ସାଙ୍ଗ ବଣିକମାନେ ତାଙ୍କୁ ଥଟ୍ଟା କରି ପଚାରିଲେ ।

"ଭାଇ, ଆମେ ସମସ୍ତେ ନ ହେଲେ ଆମ ପୂର୍ବପୁରୁଷମାନେ, କେହି ଏକା ଥରେ ପାଞ୍ଚଲକ୍ଷ ଟଙ୍କାରେ ବେପାର ଆରମ୍ଭ କରି ନ ଥିଲେ । କେହି କେହି ହୁଏତ ପାଞ୍ଚପଇସାରେ ଆରମ୍ଭ କରିଥିବେ । ଭାଗ୍ୟର ବିଧାନ କଥା କିଏ କହିବ ? ପିଲାଟି ଆଶା କରି ଏତେକ ବାଟ ଆସିଛି । ପୁଣି ମୋ ଉପରେ ତା'ର ବିଶ୍ୱାସ ଅଛି । ଏସବୁର ମୂଲ୍ୟ ତ ପୁଣି ରହିଛି ?" ହୀରାଲାଲ କୈଫିୟତ୍ ଦେଲେ ।

ସେଥର ଭଲ ପାଣିପାଗ ହୋଇଥାଏ । ହୀରାଲାଲଙ୍କ ବୋଇତ ଯାଇ ନିରାପଦରେ ସୁବର୍ଣ୍ଣ ଦ୍ୱୀପରେ ପହଞ୍ଚିଲା । ବୋଇତରେ ନେଇଥିବା ପଦାର୍ଥମାନ ବିକ୍ରୟ କରି ହୀରାଲାଲ ହାତୀଦାନ୍ତ, ନାନାବିଧ ଦୁର୍ମୂଲ୍ୟ ମସଲା ଏବଂ କେତେ ଖଣ୍ଡି ହୀରା ସଂଗ୍ରହ କରି କାରବାର ଶେଷ କଲେ ।





ଜାହାଜ ବନ୍ଦର ଛାଡ଼ି କିଛିଦୂର ସମୁଦ୍ର ଭିତରକୁ ଚାଲିଆସିବା ପରେ ଯାଇ ହୀରାଲାଲ ସୋମନାଥ କଥା ମନେ ପକାଇଲେ ।

"ଆରେ, ବଡ଼ ଭୁଲ ହୋଇଗଲା । ବୋଇତ ପୁଣି କୂଳକୁ ଭିଡ଼ାଇଲେ ମୁଁ ସେ ପିଲା ପାଇଁ ପାଞ୍ଚଟଙ୍କାର କୌଣସି ଜିନିଷ ଖରିଦ କରିବି ।" ସେ ତାଙ୍କ ସାଥିମାନଙ୍କୁ କହିଲେ ।

"ମୁଣ୍ଡ ଖରାପ ନା କ'ଣ ! ପାଞ୍ଚଟଙ୍କାର ସଉଦା ପାଇଁ ଜାହାଜ ଫେରାଇବ ! ବାଟରେ ତ ଅନ୍ୟ ଗୋଟାଏ ଦୁଇଟା ବନ୍ଦରକୁ ଯିବୁ । କିଛି କିଣିନେଲେ ହେବ ନାହିଁ ?" ତାଙ୍କ ବଣିକ ବନ୍ଧୁମାନେ କହିଲେ ।

ପନ୍ଦରଦିନ ପରେ ବୋଇତ ଅନ୍ୟ ଏକ ଦ୍ୱୀପରେ ଲାଗିଲା । ଗୋଟିଏ ଯାଯାବର ତିନୋଟି ମାଙ୍କଡ଼ ଧରି କୂଳରେ ଖେଳ ଦେଖାଉଥାଏ । ଦୁଇଟି ମାଙ୍କଡ଼ ଖୁବ୍ କସରତ୍ କରୁଥାନ୍ତି । କିନ୍ତୁ ଗୋଟାଏ ମାଙ୍କଡ଼ କିଛି ନ କରି ଜୁଳୁଜୁଳୁ କରି ସମୁଦ୍ର ଆଡ଼କୁ ଅନାଇ ବସିଥାଏ ।

ହୀରାଲାଲ ସେ [illegible] ମାଙ୍କଡ଼ ଆଡ଼କୁ ଅନାଇ ଦେଖିଲେ । ତାଙ୍କର ମନେ ହେଲା, ସେ ବିଚରା କୌଣସି ସ୍ମୃତିରେ ଆକୁଳ ହୋଇ ବସି-ରହିଛି । ଖେଳରେ ତା' ମନ ଲାଗୁନାହିଁ । ସେ ଯାହାହେଉ, ସେ ଦିଗରେ ବିଶେଷ ଧ୍ୟାନ ଦେଲା ଭଳି ସମୟ ତାଙ୍କର ନ ଥିଲା ।

ସେଠାରେ ବି ଅଳ୍ପ କିଛି କିଣାକିଣି କରି ଠିକ୍ ଜାହାଜ ଛାଡ଼ିବା ବେଳକୁ ହୀରାଲାଲଙ୍କର ସୋମନାଥ କଥା ମନେ ପଡ଼ିଲା । ପୁଣି ବନ୍ଦର ଝଟପି ବଜାରକୁ ଯାଇ କିଛି କିଣିବା ଭଳି ଉତ୍ସାହ ତାଙ୍କର ନ ଥିଲା । ଯାଯାବରଟି ସେତେବେଳେ କୂଳରେ ବସିଥାଏ । ହୀରାଲାଲ ତାକୁ ପଚାରିଲେ, "କହୋ, ତୁମ ମାଙ୍କଡ଼ରୁ ଗୋଟିଏ ବିକିବ ?"

"ଯଦି ଏହି ଅକର୍ମଣ୍ୟଟିକୁ ନେବେ ତ ନିଅନ୍ତୁ । କିନ୍ତୁ ଏ କିଛି କାମ ଦେବ ନାହିଁ । ପାଞ୍ଚଟଙ୍କା ଦେଇ ଥରେ ଜଣେ ନାବିକଠାରୁ ଏହାକୁ କିଣିଲି ଯେ ହେଲେ ଇଏ କିଛି ଖେଳ ଶିଖିପାରିଲା ନାହିଁ ।" ଯାଯାବର କହିଲା ।

"ତୁମକୁ ପାଞ୍ଚଟଙ୍କା ଦେଉଛୁ । ମାଙ୍କଡ଼ଟି ମୋତେ ଦେଇଦିଅ ।" ହୀରାଲାଲ କହିଲେ । ଯାଯାବର ଆନନ୍ଦରେ ମାଙ୍କଡ଼ ବିକିଦେଲା ।

ସେଠାରୁ ଯାଇ ବୋଇତ ଯେଉଁ ଦ୍ୱୀପରେ ଲାଗିଲା, ସେ ଦ୍ୱୀପର ଉପକଣ୍ଠରେ ପ୍ରଚୁର ମୁକ୍ତାଥିବା ଶାମୁକା ମିଳୁଥାନ୍ତି । କୌଣସି ଜାହାଜ ଆସିବାର ଦେଖିଲେ ସେଠାକାର ଯୁବକମାନେ ସମୁଦ୍ରକୁ ଡେଇଁ ଶାମୁକାମାନ ଗୋଟାଇଆଣନ୍ତି । ବଣିକମାନଙ୍କୁ ସେ ଶାମୁକା କିଣିବାକୁ ପଡ଼େ । ଶାମୁକା ଭିତରୁ କାହା ଭାଗ୍ୟରେ ହୁଏତ ଚମତ୍କାର ମୋତି ଜୁଟେ, କାହା ଭାଗ୍ୟରେ ହୁଏତ କିଛି ଜୁଟେନାହିଁ ।

ହୀରାଲାଲଙ୍କ ବୋଇତ କୂଳରେ ଭିଡ଼ିବା ମାତ୍ରେ ଯୁବକମାନେ ଉତ୍ସାହଭରେ ସମୁଦ୍ର ଭିତରକୁ ଲମ୍ଫ ଦେଲେ ଓ ମୁଠା ମୁଠା ଶାମୁକା ଧରି ଉଠିଲେ । ହୀରାଲାଲ ଏବଂ ତାଙ୍କ ସାଥିମାନେ କିଛି କିଛି ଶାମୁକା କିଣିଲେ ।

ହଠାତ୍ ମାଙ୍କଡ଼ ଡୁବ ଦେଲା । ବଣିକ ହୀରାଲାଲ ଭାବିଲେ, ବିଚରା ସୋମନାଥ ଭାଗ୍ୟରେ ମାଙ୍କଡ଼ଟାଏ ବି ଜୁଟିଲା ନାହିଁ । କିନ୍ତୁ ଷୁହୁଁ ଷୁହୁଁ ମାଙ୍କଡ଼ ତା' ଦୁଇ ହାତରେ ଦୁଇଟି ବଡ଼ ବଡ଼ ଶାମୁକା ଧରି ଜାହାଜ ଉପରକୁ କୁଦି ଆସିଲା । ଶାମୁକା ଦୁଇଟି ହୀରାଲାଲଙ୍କ ପାଖରେ ଥୋଇ-ଦେଇ ସେ ପୁଣି ଡୁବ ଦେଲା ଓ ପୁଣି ଶାମୁକା ଧରି ଉଠିଲା ।

କଥା କ'ଣ କି, ସେ ମାଙ୍କଡ଼ ଦିନେ ସେହି



ଦ୍ୱୀପରେ ଥିଲା । ତା' ଖାଉନ୍ଦ ତାକୁ ସମୁଦ୍ରରେ ଡେଇଁ ବୁଡ଼ଦେଇ ଶାମୁକା ଗୋଟାଇବାକୁ ଶିଖାଇଥିଲେ । ଖାଉନ୍ଦ ମରିଯିବା ପରେ ଦିନେ ମାଙ୍କଡ଼ ଜଣକ ଜାହାଜ ଉପରେ ଆସି ବସି-ଥାଏ, ସେ ଜାହାଜ ଛାଡ଼ଦେଲା । ଜାହାଜର ମାଲିକ ମାଙ୍କଡ଼ର ଗୁଣ କଥା ଜାଣି ନ ଥିଲେ । ସେ ଅନ୍ୟ ଦ୍ୱୀପରେ ପାଞ୍ଚ ଟଙ୍କାରେ ମାଙ୍କଡ଼କୁ ଜଣେ ଯାଯାବରକୁ ବିକି କରଦେଇଥିଲେ । ମାଙ୍କଡ଼ ବର୍ତ୍ତମାନ ନିଜ କୃତିତ୍ୱ ଦେଖାଇବାର ସୁଯୋଗ ପାଇ ଖୁବ୍ ଉତ୍ସାହିତ ହେଲା ।

ପରଦିନ ବୋଇତ ଛାଡ଼ିଲା । କେତେଦିନ ପରେ ହୀରାଲାଲ ନିଜ ଘରେ ଆସି ପହଞ୍ଚିଲେ ଓ ସୋମନାଥକୁ ଡକାଇପଠାଇଲେ । ମାଙ୍କଡ଼ ଯେଉଁସବୁ ଶାମୁକା ଗୋଟାଇଥିଲା, ସେସବୁ ଭିତରୁ ସୁନ୍ଦର ମୋତିମାନ ବାହାରିଲା । ସାଧୁ ହୀରାଲାଲ କହିଲେ, "ମାଙ୍କଡ଼ ତୋ ନାମରେ କିଣିଥିଲି । ତେଣୁ ମାଙ୍କଡ଼ର ମାଲିକ ତୁ । ସେ ଗୋଟାଇଥିବା ମୁକ୍ତାମାନ ବି ତୋର ।"

ମାଙ୍କଡ଼ ଓ ମୁକ୍ତା ନେଇ ସୋମନାଥ ଘରକୁ ଫେରିଲା । କ୍ରମେ ଯେତେବେଳେ ସେ ସେସବୁ ମୁକ୍ତାର ମୂଲ୍ୟ ବୁଝିଲା, ସେତେବେଳେ ତା'ର ବିସ୍ମୟ ଓ ଆନନ୍ଦର ସୀମା ରହିଲା ନାହିଁ ।

"ମାଙ୍କଡ଼ଟାଏ ଏଡ଼େ କୃତିତ୍ୱ ଦେଖାଇଲା, ଅଥଚ ମୁଁ ଅଳସୁଆ ହୋଇ ବସିରହିଛି ।" ଏହା ଭାବି ସୋମନାଥ ସେ ମୁକ୍ତା-ଲବ୍ଧ ଅର୍ଥରେ ନୂଆଘର ତିଆରି କଲା ଏବଂ ବେପାର ବଣିଜ ଆରମ୍ଭ କଲା । ବର୍ଷକରେ ଦୁଇଥର ସେ ଗୋଟିଏ ବୋଇତରେ ତା' ମାଙ୍କଡ଼କୁ ନେଇ ମୁକ୍ତା ମିଳୁଥିବା ଦ୍ୱୀପକୁ ଯାଏ ଓ ମାଙ୍କଡ଼ ଦ୍ୱାରା ମୁକ୍ତା ଗୋଟାଏ ।

ଦିନ ଆସିଲା, ଯେତେବେଳେ ଲୋକମାନେ ଆପଣଛାଏଁ ସୋମନାଥକୁ 'ନିଦୁଆ ସୋମନାଥ' ବୋଲି ଅଭିହିତ ନ କରି 'ବଣିକ ସୋମନାଥ' ବୋଲି ଅଭିହିତ କଲେ ।





# ବିଫଳ ଚାଲ୍

ମହାଜନ ଦୁର୍ଗାପ୍ରସାଦଙ୍କୁ ଜୟବାବୁ କହିଲେ,

"ଭାଇ, ମୋ ଝିଅ ବାହାଘର । ମୋତେ ଦଶହଜାର ଟଙ୍କା ଧାର ଦିଅ । ମୁଁ ପାଞ୍ଚ କିସ୍ତିରେ ଶୁଝିଦେବି ।"

ଦୁର୍ଗାପ୍ରସାଦ ଓସ୍ତାଦ ଲୋକ । ସେ ଖାତକମାନଙ୍କ ଆବଶ୍ୟକତା ଅନୁସାରେ ସୁଧର ପରିମାଣ ଧାର୍ଯ୍ୟ କରେ । ଜୟବାବୁଙ୍କ ପ୍ରୟୋଜନ ଖୁବ୍ ଜରୁରି ବୋଲି ବୁଝିପାରି ସେ ଖୁବ୍ ଉଚ୍ଚହାରରେ ସୁଧ ଦାବି କଲା ।

ଜୟବାବୁ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, "ନା ଭାଇ, ଏତେ କଡ଼ା ସୁଧ ଦେଇ ମୁଁ କରଜ କରିବି ନାହିଁ । ବରଂ ମୋର ଯେଉଁ ପୁରୁଣା କୋଠା ଖାଲି ପଡ଼ିଛି, ସେ ଖଣ୍ଡି ବିକିଦେବି ।"

ଜୟବାବୁଙ୍କ ପୂର୍ବପୁରୁଷ ଜମିଦାର ଥିଲେ । ତାଙ୍କ ପୁରୁଣା କୋଠା ଦିନେ ଅତି ସୁନ୍ଦର ଥିଲା । କିନ୍ତୁ ତାହା ଭାଙ୍ଗିରୁଜି ଯାଇଥାଏ ।

ଜୟବାବୁ କରଜ ନ ନେବାରୁ ଦୁର୍ଗାପ୍ରସାଦ ହତାଶ ହେଲେ । ଜୟବାବୁଙ୍କ ଉପରେ ତାଙ୍କର ରାଗ ବି ହେଲା । ତାଙ୍କ କୋଠା ଯେମିତି ବିକ୍ରି ହୋଇ ନ ପାରିବ, ସେଥିପାଇଁ ସେ ପ୍ରଚାର କରିଦେଲେ ଯେ ତାହା ଗୋଟିଏ ଭୂତକୋଠି ।

ମୁହଁ ମୁହଁ ସେ କଥା ବ୍ୟାପିଗଲା । କେହି କେହି କହିଲେ, "ମୁଁ ତହିଁ ଭିତରୁ କାନ୍ଦଣା ଶବ୍ଦ ଶୁଣିଛି ।" ଆଉ କେହି କେହି ଅଟ୍ଟହାସ୍ୟ ଶୁଣିଥିବାର ପ୍ରକାଶ କଲେ । ଏହିପରି କ୍ରମେ କ୍ରମେ ବିଭିନ୍ନ ପ୍ରକାରର ଅଦ୍ଭୁତ କଥାମାନ ପ୍ରଚାର ହୋଇଚାଲିଲା ।

ମଫସଲ ଅଞ୍ଚଳ । ପୁରୁଣା କୋଠା କିଣିଲା ଭଳି ସମ୍ବଳ ଯେଉଁ ଦୁଇ ଚାରିଜଣଙ୍କର ଥିଲା ସେମାନେ ସେ ପ୍ରଚାର ଶୁଣି ତାକୁ କିଣିବାକୁ

ଗୋବର୍ଦ୍ଧନ

ଆଉ କୌଣସି ମତେ ମଙ୍ଗିଲେ ନାହିଁ ।

ଦିନେ ଦୁର୍ଗାପ୍ରସାଦଙ୍କ ଘରେ ଆସି ଅତିଥି ହେଲେ ଜଣେ ଧନିକ । ତାଙ୍କର ସେ ଅଞ୍ଚଳରେ ଗୋଟାଏ କାରଖାନା ବସାଇବାର ଇଚ୍ଛା ଥାଏ । ବାଟରେ ଜୟବାବୁଙ୍କ ପୁରୁଣା କୋଠା ତାଙ୍କର ଦୃଷ୍ଟି ଆକର୍ଷଣ କଲା । ସେ ତ ସହରର ଲକ୍ଷପତି, ଗାଁ ଗଣ୍ଡାରେ କୋଠାର ଦାମ୍ ଯେ ବେଶୀ ନୁହେଁ, ସେ କଥା ସେ କାହୁଁ ଜାଣିବେ ! ସେ ଦୁର୍ଗାପ୍ରସାଦଙ୍କୁ କହିଲେ, "ଆଜିକାଲି ସେ ଢଙ୍ଗର କୋଠା କେହି ବନାଉ ନାହାନ୍ତି । ଯଦି ଲକ୍ଷେ ପଚିଶ ଟଙ୍କାରେ ମିଳିଯାନ୍ତା, ତେବେ ମୁଁ ସେ କୋଠା କିଣିନେଇ ମରାମତି କରନ୍ତି ।"

"କିନ୍ତୁ କୋଠାରେ ହେବ କ'ଣ ? "ଦୁର୍ଗା-ପ୍ରସାଦ ପଚାରିଲେ ।

"କାହିଁକି, ଏଠାରେ କାରଖାନା ହେଲେ ମୋତେ ତ ମଝେ ମଝେ ଏଠି ଆସି ରହିବାକୁ ହେବ !" ଧନିକ କହିଲେ ।

ଧନିକ ଚାଲିଯିବା ମାତ୍ରେ ଦୁର୍ଗାପ୍ରସାଦ ଜୟ-ବାବୁଙ୍କୁ ଭେଟି କହିଲେ, "ମୁଁ ଦଶହଜାର ଦେବି । କୋଠାଟି ମୋତେ ବିକି ଦିଅ ।" ଜୟ-ବାବୁ ଠଉରାଇନେଲେ, ମହାଜନଙ୍କର ଆଉ କିଛି ମତଲବ ଅଛି । ସେ କହିଲେ, "ପଚିଶ ହଜାରରୁ କମ୍‌ରେ ବିକିବି ନାହିଁ !"

ଦୁର୍ଗାପ୍ରସାଦ ତଥାପି କୋଠା କିଣିବାକୁ ରାଜି ହେଲେ । ଜୟବାବୁ ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ଖୁସୀ ହେଲେ କାରଣ ଭଙ୍ଗାକୋଠାର ମୂଲ୍ୟ କୋଡ଼ିଏ ହଜାରରୁ ଅଧିକ ହୁଅନ୍ତା ନାହିଁ ।

କିଣିସାରି ଦୁର୍ଗାପ୍ରସାଦ ତାଙ୍କ ଧନିକ ବନ୍ଧୁଙ୍କୁ ଲେଖିଲେ, "ବର୍ତ୍ତମାନ ଲକ୍ଷେ ଟଙ୍କାରେ କୋଠାଟି ତୁମକୁ ମିଳିବ ।" କିନ୍ତୁ ଉତ୍ତର ଆସିଲା, "ନା ବନ୍ଧୁ, ବାଟରେ ଆସିଲା ବେଳେ ମୁଁ ଶୁଣିଲି ତାହା ଭୂତକୋଠି । ଭୂତଙ୍କ ସାଥିରେ ମୁଁ ରହିବି ନାହିଁ ।"






ଥରେ ଭୂଲୋକରେ ବୁଲୁ ବୁଲୁ ଦେବର୍ଷି ନାରଦ ମହର୍ଷି ବ୍ୟାସଦେବଙ୍କ ଆଶ୍ରମରେ ଆସି ପହଞ୍ଚିଲେ । ନାରଦଙ୍କୁ ଦେଖି ବ୍ୟାସ-ଦେବଙ୍କ ଆନନ୍ଦ କହିଲେ ନ ସରେ । ସେ ତାଙ୍କୁ ପାଦ୍ୟ, ଅର୍ଘ୍ୟ ଇତ୍ୟାଦି ଦ୍ୱାରା ସମ୍ଭାଷଣ ଜଣାଇଲେ । ନାରଦ ଟିକିଏ ବିଶ୍ରାମ କରି-ସାରିବା ପରେ ବ୍ୟାସଦେବ କହିଲେ, "ହେ ଦେବର୍ଷି, ଆପଣଙ୍କୁ ଏ ସଂସାରରେ ରହିବାକୁ ପଡ଼ୁନାହିଁ । ଆପଣ ପୃଥିବୀକୁ ଆସନ୍ତି ଏବଂ ପୁଣି ସ୍ୱେଚ୍ଛାକ୍ରମେ ବୈକୁଣ୍ଠକୁ ଅଥବା ସ୍ୱର୍ଗପୁରୀର ଯେ-କୌଣସି ଅଂଶକୁ ଚାଲିଯାଆନ୍ତି । ଭଗବାନ୍‌ଙ୍କୁ ସ୍ମରଣ କରି ଗୀତ ବୋଲି ବୋଲି ଆନନ୍ଦରେ ସମୟ ଅତିବାହିତ କରୁଥାନ୍ତି । ମୋତେ ଏ ପୃଥିବୀରେ ରହିବାକୁ ପଡ଼ୁଛି ଏବଂ ମଣିଷଙ୍କ ହାଲ୍‌ଚାଲ୍ ଦେଖିବାକୁ ପଡ଼ୁଛି । ଥରେ ଥରେ ମୋ ମନକୁ ଏହି ପ୍ରଶ୍ନ ଆସେ : "ମଣିଷର ଦୁଃଖକଷ୍ଟର ଶେଷ କାହିଁ ? ଏ ପୃଥିବୀରେ ସୁଖଲାଭ କ'ଣ କାହାର ପକ୍ଷେ ସମ୍ଭବ ନୁହେଁ ? ସାଧାରଣ ଲୋକେ ଭାବନ୍ତି, ରାଜସିଂହାସନ ବହୁତ ସୁଖପ୍ରଦ । କିନ୍ତୁ ମୁଁ ରାଜବଂଶମାନଙ୍କ ଅବସ୍ଥା ଦେଖିଛି । ପାଣ୍ଡୁ ଓ ଧୃତରାଷ୍ଟ୍ରଙ୍କ ପୁଅ-ମାନଙ୍କ ଭିତରେ ମହା ବିବାଦ ଉପୁଜିଲା । ପାଣ୍ଡବମାନଙ୍କୁ ବହୁ ଯାତନା ସହିବାକୁ ହେଲା । ତେଣୁ ସୁଖ ସମ୍ପର୍କରେ ମଣିଷର ଯେଉଁ ଧାରଣା ରହିଛି, ତାହା ଭ୍ରାନ୍ତ ବୋଲି କହିବାକୁ ହେବ । ରାଜପଦରେ ସୁଖ ନାହିଁ କି ସ୍ତ୍ରୀ ପୁତ୍ର ପୌତ୍ର

ନାରଦଙ୍କ ହିନସ୍ତା




ନେଇ ସଂସାର ବାନ୍ଧିବାରେ କୌଣସି ସୁଖ ନାହିଁ । ଆପଣ ବାସ୍ତବିକ ଭାଗ୍ୟବାନ୍ ।"

ନାରଦ କହିଲେ : "ବ୍ୟାସଦେବ ! ମାୟାରୁ କାହାରି ରକ୍ଷା ନାହିଁ । ବ୍ରହ୍ମା ବିଷ୍ଣୁଙ୍କୁ ମଧ୍ୟ ଥରେ ଥରେ ମାୟାର ଶିକାର ହେବାକୁ ପଡ଼ିଥାଏ । ମୋତେ ତୁମେ ଭାଗ୍ୟବାନ୍ ବୋଲି କହୁଛ । କିନ୍ତୁ ମାୟା ମୋତେ ମଧ୍ୟ କମ୍ କଲବଲ କରିନାହିଁ । ମୋ କାହାଣୀ କହୁଛି, ଶୁଣ ।"

ଏହା ପରେ ନାରଦ ବ୍ୟାସଦେବଙ୍କୁ ତାଙ୍କ କାହାଣୀ ଶୁଣାଇଲେ : ଥରେ ନାରଦ ଏବଂ ପର୍ବତ ଋଷି ପୃଥିବୀ ଭ୍ରମଣ କରି ସବୁ ପୁଣ୍ୟତୀର୍ଥ ଦେଖିବା ସକାଶେ ସିଦ୍ଧାନ୍ତ ନେଲେ । ଦୁହିଙ୍କ ଭିତରେ ଏହି ସର୍ତ୍ତ ହେଲା ଯେ ନିଜ ନିଜ ମନକଥା ଦୁହେଁ ପରସ୍ପରଠାରୁ ଲୁଚାଇବେ ନାହିଁ ।

ଦୁହେଁ ଦେଶାଟନ କରୁଥାନ୍ତି । ଗ୍ରୀଷ୍ମଋତୁ ଶେଷ ହୋଇ ବର୍ଷାଋତୁ ଆରମ୍ଭ ହେଲା ! କୌଣସି ସ୍ଥାନରେ ଆଶ୍ରୟ ନେଇ ବର୍ଷାକାଳ ବିତାଇଦେବାର ସିଦ୍ଧାନ୍ତ କଲେ ଦୁଇ ପରିବ୍ରାଜକ । ସେମାନେ ସଞ୍ଜୟ ନାମକ ରାଜାଙ୍କ ନଅରରେ ପହଞ୍ଚିଲେ ।

ରାଜା ସେମାନଙ୍କୁ ସାଦରେ ଅତିଥି ରୂପେ ଗ୍ରହଣ କଲେ । ରାଜପ୍ରାସାଦରେହିଁ ସେମାନଙ୍କ ରହିବାର ବ୍ୟବସ୍ଥା ହେଲା । ସ୍ୱୟଂ ରାଜକନ୍ୟା ମଦୟନ୍ତୀ ଦୁହିଙ୍କର ପରିଚର୍ଯ୍ୟାର ଭାର ଗ୍ରହଣ କଲେ । ସେମାନଙ୍କର ସ୍ନାନାହାର ଭ୍ରମଣ ତଥା ଅଧ୍ୟୟନ ଯେପରି ନିର୍ବିଘ୍ନରେ ହୋଇପାରିବ, ସେ ଦିଗରେ ସବୁ ବ୍ୟବସ୍ଥା କରାଗଲା । ସେମାନଙ୍କ ମନୋରଞ୍ଜନ ସକାଶେ ପ୍ରାସାଦରେ ନାନା କାର୍ଯ୍ୟକ୍ରମର ବ୍ୟବସ୍ଥା ମଧ୍ୟ କରାଗଲା ।

ନାରଦଙ୍କ ବୀଣାବାଦନ ଏବଂ ସାମଗାନ ମଦୟନ୍ତୀଙ୍କୁ ଧୀରେ ଧୀରେ ଆକୃଷ୍ଟ କଲା । ମଦୟନ୍ତୀଙ୍କ ସେବାରେ ତେଣେ ନାରଦ ମଧ୍ୟ ମୁଗ୍ଧ ହେଲେ । ତା'ଛଡ଼ା ମଦୟନ୍ତୀ ଥିଲେ ବିଶେଷ ରୂପବତୀ ।



ନାରଦ ଓ ମଦୟନ୍ତୀଙ୍କ ଭିତରେ ପ୍ରୀତିଭାବ ବଢ଼ିବାର ଫଳ ହେଲା, ମଦୟନ୍ତୀ ତାଙ୍କ ସେବାରେ ନାରଦଙ୍କ ପ୍ରତି ପକ୍ଷପାତ କରିବାକୁ ଲାଗିଲେ । ନାରଦଙ୍କ ସ୍ନାନ ସକାଶେ ଗରମ ପାଣିର ବ୍ୟବସ୍ଥା କରିବା ସ୍ଥଳେ ହୁଏତ ପର୍ବତଙ୍କୁ ଥଣ୍ଡା ପାଣିହିଁ ଯୋଗାଇଦେଲେ । ଖାଇବା ବେଳେ ମଧ୍ୟ ନାରଦଙ୍କୁ ମିଳିଲା ଭଲ ଭଲ ଚିଜ । ରାଜକନ୍ୟା ସବୁବେଳେ ନାରଦଙ୍କୁ ଅନାଇ ମୃଦୁ ମୃଦୁ ହସୁଥାନ୍ତି, କିନ୍ତୁ ପର୍ବତଙ୍କ ଆଡ଼କୁ ଦୃଷ୍ଟିପାତ ମଧ୍ୟ କରୁ ନ ଥାନ୍ତି ।

ଦିନେ ପର୍ବତ ଋଷି ନାରଦଙ୍କୁ କହିଲେ, "ବନ୍ଧୁ ! ରାଜକନ୍ୟାଙ୍କ ଗତିବିଧିରୁ ମୋର ମନେ ହୁଏ ସେ ତୁମ ପ୍ରତି ଆସକ୍ତ । ତୁମେ ମଧ୍ୟ ତାଙ୍କ ପ୍ରତି ଅନୁରକ୍ତ ବୋଲି ମୋର ବିଶ୍ୱାସ । ଏହା ଯଦି ସତ୍ୟ ହୋଇଥାଏ, ତେବେ ତୁମର ମୋତେ ଏସବୁ କହିଦେବା ଉଚିତ ନୁହେଁ କି ? ଆମ ଭିତରେ ପରା ଏଇ ସର୍ତ୍ତ ରଖାହୋଇଥିଲା ଯେ ଆମେ କାହାଠାରୁ କିଛି ଲୁଚାଇବା ନାହିଁ ?"

ନାରଦ ସଲଜ୍ଜ ଭାବରେ କହିଲେ, "ମୁନିବର ! ଆପଣଙ୍କୁ କହିବାକୁ ଅବସର ପାଇନାହିଁ ବୋଲି କହିନାହିଁ । ଆପଣଙ୍କ ଅନୁମାନ ଠିକ୍ । ରାଜକନ୍ୟା ମୋ ପ୍ରତି ଅନୁରକ୍ତା ମୁଁ ମଧ୍ୟ ତାଙ୍କ ପ୍ରତି ଅନୁରକ୍ତ ।"

ପର୍ବତ ଋଷି ରାଗିଗଲେ । ସେ କହିଲେ, "ତୁମେ ମୋ ପାଖରୁ ଏ କଥା ଲୁଚାଇ ସର୍ତ୍ତ ଭଙ୍ଗ କରିଛ । ତୁମକୁ ଅଭିଶାପ ଦେଉଛି : ତୁମେ ମର୍କଟ-ବଦନ ହୁଅ ।"

ନାରଦ ମଧ୍ୟ ରାଗିଯାଇ କହିଲେ, "ସାମାନ୍ୟ ଦୋଷ ସକାଶେ ତୁମେ ଗୁରୁ ଅଭିଶାପ ଦେଲ । ମୁଁ ବି ଅଭିଶାପ ଦେଉଛି : ତୁମେ ସ୍ୱର୍ଗକୁ ଯାଇପାରିବ ନାହିଁ ।"

ନାରଦଙ୍କ ମୁହଁ ମର୍କଟ ଭଳି ହୋଇଗଲା । ପର୍ବତ ସେଠାରୁ ଚାଲିଗଲେ । କିନ୍ତୁ ସେ ସ୍ୱର୍ଗପୁରକୁ ଯାଇପାରିଲେ ନାହିଁ । ମର୍ତ୍ତ୍ୟଲୋକରେହିଁ ଇତସ୍ତତଃ ବିଚରଣ କରିବାକୁ ଲାଗିଲେ ।



ରାଜକନ୍ୟା ପୂର୍ବପରି ନାରଦଙ୍କୁ ସେବା କରୁଥିଲେ । କିନ୍ତୁ ନାରଦ ବଡ଼ ଅପମାନ ଅନୁଭବ କଲେ ।

ରାଜା ସଞ୍ଜୟ ଦିନେ ତାଙ୍କ ମନ୍ତ୍ରୀଙ୍କୁ କହିଲେ, "ମୋ କନ୍ୟାର ବିବାହ ଦେବା ସମୟ ଉପସ୍ଥିତ । ତୁମେ ଜଣେ ଯୋଗ୍ୟ ରାଜକୁମାର ଠାବ କର ।"

ମନ୍ତ୍ରୀ କହିଲେ, "ମହାରାଜ, ଆମ ପ୍ରତିବେଶୀ ରାଜ୍ୟମାନଙ୍କରେ ଉପଯୁକ୍ତ ରୂପଗୁଣ ସମ୍ପନ୍ନ ଏକାଧିକ ରାଜପୁତ୍ର ଅଛନ୍ତି । ମୁଁ ସେମାନଙ୍କୁ ଆପଣଙ୍କ ଆଗରେ ଉପସ୍ଥାପିତ କରିବି । ଆପଣ ଜଣଙ୍କୁ ମନୋନୀତ କରିବେ ।"

ବିବାହ ପାଇଁ ରାଜା ଆୟୋଜନ କରୁଛନ୍ତି ବୋଲି ଜାଣି ରାଜକନ୍ୟା ଜଣେ ସଖୀ ଦ୍ୱାରା ରାଜାଙ୍କୁ ଜଣାଇଲେ କି ସେ ନାରଦଙ୍କୁ ମନେ ମନେ ବରଣ କରିଛନ୍ତି । ଅତଏବ ବରପାତ୍ର ଅନ୍ୱେଷଣର ପ୍ରୟୋଜନ ନାହିଁ ।

ରାଜା ଏହା ଶୁଣି ହତବମ୍ବ ହୋଇଗଲେ । ତା'ପରେ ସେ ରାଣୀଙ୍କୁ କହିଲେ, "ଝିଅ ଏଭଳି ସିଦ୍ଧାନ୍ତ ନେଲା କିପରି ? ନାରଦ ଖାଲି ବୁଲି ଭିଖାରି ଭଳି ନୁହେଁ, ତାଙ୍କ ଚେହେରା ବି ମର୍କଟ ଭଳି ହୋଇଗଲାଣି । ତାଙ୍କୁ ମୁଁ ଝିଅ ଦେବି କିପରି ? ତୁମେ ଝିଅକୁ ବୁଝାଅ । ସେ ନିଜ ସିଦ୍ଧାନ୍ତ ବଦଳାଇଦେଉ ।"

ରାଣୀ ଯାଇ ମଦୟନ୍ତୀଙ୍କୁ ବୁଝାଇଲେ : "ଝିଅ ! ତୋ ଅଦ୍ଭୁତ ସିଦ୍ଧାନ୍ତ କଥା ଶୁଣି ତୋ ବାପା ଓ ମୁଁ ମୁଣ୍ଡରେ ହାତ ଦେଇ ବସିଛୁ । ତୋ ଭଳି ସୁନ୍ଦରୀ କନ୍ୟା ଏ ଖଣ୍ଡମଣ୍ଡଳରେ ନାହାନ୍ତି । କେତେ ଯୋଗ୍ୟ ରାଜପୁତ୍ର ତୋତେ ବିଭା ହେବା ସକାଶେ ଉଦ୍‌ଗ୍ରୀବ ହୋଇ ବସିଛନ୍ତି । ଆମେ ସେମାନଙ୍କ ଭିତରୁ ଜଣକ ସହ ତୋ ବିବାହ ଦେବା ନିମନ୍ତେ କେତେ ଆଶା ବାନ୍ଧିଥିଲୁ । ଆମକୁ ଏପରି ଦୁଃଖ ଦେବା କ'ଣ ତୋ ପକ୍ଷରେ ଉଚିତ ? ତୁ କ'ଣ ଆମକୁ ଲୋକହସା କରିବୁ ଓ ନିଜେ ଲୋକହସା ହେବୁ ?"



କିନ୍ତୁ ରାଜକନ୍ୟା ମଦୟନ୍ତୀ ବିଚଳିତ ନ ହୋଇ କହିଲେ, "ମା, ତୁମେ ଯେଉଁ ରାଜପୁତ୍ର-ମାନଙ୍କୁ ଯୋଗ୍ୟ ବୋଲି ବିଚାରୁଛ, ସେମାନଙ୍କର ବିଶେଷତ୍ୱ କ'ଣ ଅଛି ? ରାଜ୍ୟ, ଧନସମ୍ପଦ ଏସବୁ ତ ମୁଁ ଦେଖିଲି । ସେସବୁ ପ୍ରତି ମୋର ଆକର୍ଷଣ ନାହିଁ । ନାରଦଙ୍କ ସଙ୍ଗୀତ ପ୍ରତିଭା, ରାଜ୍ୟ, ଧନ, ଯୌବନ ଓ ସୌନ୍ଦର୍ଯ୍ୟ ଅପେକ୍ଷା ଅଧିକ ମହତ୍ତ୍ୱ ।"

ରାଣୀ କହିଲେ, "ଝିଅ ! ତାଙ୍କ ମୁହଁ ଯେ ମର୍କଟ ଭଳି, ସେ କଥା ତୁ ଭୁଲିଯାଉଛୁ କିପରି ?"

ରାଜକନ୍ୟା ଉତ୍ତର ଦେଲେ : "ସେ ମର୍କଟ-ବଦନ ହେବା ପୂର୍ବରୁହିଁ ମୁଁ ତାଙ୍କୁ ଭଲ ପାଇଛି । ସେ ମର୍କଟ-ବଦନ ହେବା ସତ୍ତ୍ୱେ ମୋ ମନୋଭାବରେ କୌଣସି ପ୍ରକାର ପରି-ବର୍ତ୍ତନ ହୋଇନାହିଁ । କାରଣ ମୁଁ ତାଙ୍କ ଗୁଣର ଅନୁରାଗୀ । ସେ ଦେଖିବାକୁ କିପରି, ସେଥି ପ୍ରତି ମୋର ଖାତର ନାହିଁ । ମୁଁ ତାଙ୍କୁ ବିଭା ହୋଇ ସୁଖୀ ହେବି, ଏଥିରେ ସନ୍ଦେହ ନାହିଁ । କିନ୍ନରମାନଙ୍କ ମୁହଁ ଦେଖିବାକୁ ଅଶ୍ୱ ଭଳି । ତା' ବୋଲି କ'ଣ ସେମାନଙ୍କ ସଙ୍ଗୀତ ପ୍ରତିଭାକୁ ଗୌଣ କରି ଦେଖିପାରିବ ? ସେହିପରି ନାରଦଙ୍କ ଚେହେରା ଯାହା ହେଉ ନା କାହିଁକି, ତାଙ୍କ ବ୍ୟକ୍ତିତ୍ୱ ମୋ ହୃଦୟ କିଣିନେଇଛି । ତୁମେ ବାପାଙ୍କୁ ବୁଝାଅ । ସେ ମୋ ପ୍ରସ୍ତାବରେ ନିଶ୍ଚିତ ସମ୍ମତ ହେବେ ।"

ରାଣୀ ଅଗତ୍ୟା ଝିଅର ହୋଇ ବୁଝାଇଲେ । ରାଜା କିଛିଦିନ ପର୍ଯ୍ୟନ୍ତ ଅମତ ହୋଇ ରହିଲେ । ତା'ପରେ ଝିଅର ଇଚ୍ଛା ପୂର୍ଣ୍ଣ କରିବାକୁ ସ୍ଥିର କଲେ । ନାରଦଙ୍କ ସହ ମଦୟନ୍ତୀଙ୍କ ବିବାହ ହୋଇଗଲା ।

ନାରଦ ଶ୍ୱଶୁରାଳୟରେହିଁ ରହିଲେ । ସେ ଯେତେବେଳେ ରାଜକନ୍ୟାଙ୍କୁ ଦେଖନ୍ତି, ସେତେ-ବେଳେ ନିଜର ମର୍କଟବଦନ ଯୋଗୁ ଗଭୀର ଦୁଃଖ ଅନୁଭବ କରନ୍ତି । କିନ୍ତୁ ରାଜକନ୍ୟାଙ୍କ ମନରେ କୌଣସି କ୍ଷୋଭ ନ ଥିଲା ।



କଚ୍ଛାଦନ ବାନ୍ଧିଗଲା । ପର୍ବତଋଷି ଏଣେ-ତେଣେ ବୁଲିବୁଲି କରି ତା'ପରେ ନାରଦଙ୍କୁ ଦେଖିବା ଅଭିଳାଷରେ ରାଜପ୍ରାସାଦରେ ଆସି ପହଞ୍ଚିଲେ । ନାରଦଙ୍କୁ ଦେଖି ତାଙ୍କ ମନରେ ଦୟା ଓ ସନ୍ତାପ ଆସିଲା । ସେ କହିଲେ, "ମୁଁ ମୋ ଅଭିଶାପ ପ୍ରତ୍ୟାହାର କରିନେଲି । ତୁମ ଚେହେରା ସ୍ୱାଭାବିକ ହୋଇଯାଉ ।"

ନାରଦ କହିଲେ, "କ୍ରୋଧପରବଶ ହୋଇ ମୁଁ ଯେଉଁ ଶାପ ଦେଇଥିଲି, ତାହା ମଧ୍ୟ ପ୍ରତ୍ୟାହାର କଲି । ତୁମେ ଏଣିକି ସ୍ୱର୍ଗକୁ ଯାଇ ପାରିବ ।"

ପର୍ବତ ପ୍ରସନ୍ନ ହୋଇ ଚାଲିଗଲେ ।

ନାରଦଙ୍କ ବଦନ ସ୍ୱାଭାବିକ ହୋଇଯିବାରୁ ରାଜକନ୍ୟା ଖୁବ୍ ଖୁସି ହେଲେ । ସେ ଦୌଡ଼ି-ଯାଇ ରାଣୀଙ୍କୁ ଓ ରାଣୀ ଯାଇ ରାଜାଙ୍କୁ ସେ ଖବର ଦେଲେ । ସଭିଏଁ ପ୍ରସନ୍ନ ହେଲେ ।

ନାରଦ ଏହି ମନ୍ତବ୍ୟ ଦେଇ ତାଙ୍କର ସେ ଅଭିଜ୍ଞତା ବର୍ଣ୍ଣନା ଶେଷ କଲେ : "ସଂସାର ବନ୍ଧନରେ ପଡ଼ି ମୋତେ ମର୍କଟବଦନ ହୋଇ ରହିବାକୁ ପଡ଼ିଥିଲା । ମୋର ସେ ଅପମାନ କଥା ଜାଣିବା ପରେ ମୋତେ ଆଉ ଭଗବାନ୍ କହିପାରିବ କି ?"

ଏହା ପରେ ନାରଦ ଅନ୍ୟ ଏକ ଅଭିଜ୍ଞତା ବର୍ଣ୍ଣନା କଲେ :

ଥରେ ନାରଦ ବିଷ୍ଣୁଙ୍କୁ ଦର୍ଶନ କରିବାକୁ ଗଲେ । ସେ ଯିବାବେଳକୁ ଲକ୍ଷ୍ମୀ ବିଷ୍ଣୁଙ୍କ ପାଖରେ ବସିଥିଲେ । ନାରଦ ଆସିବାର ଦେଖି ସେ ଚଟାପଟ୍ ଉଠିପଡ଼ି ଭିତରକୁ ଚାଲିଗଲେ ।

ସେଥିରେ ନାରଦ ଅପମାନ ବୋଧ କଲେ । ସେ ବିଷ୍ଣୁଙ୍କୁ କହିଲେ, "ମହାପ୍ରଭୁ ! ମୁଁ କ'ଣ ଜଣେ ସାଧାରଣ ଆଗନ୍ତୁକ ହୋଇଛି ଯେ ମୋତେ ଦେଖି ଲକ୍ଷ୍ମୀଦେବୀ ଭିତରକୁ ଚାଲି-ଯିବେ । ମୁଁ ତପସ୍ୱୀ । ସବୁ ଇନ୍ଦ୍ରିୟ ମୁଁ ଜୟ କରି ପାରିଛି । ଲକ୍ଷ୍ମୀଦେବୀଙ୍କର ଏଭଳି ବ୍ୟବହାର ମୋତେ ଭଲ ଲାଗିଲା ନାହିଁ ।"

ବିଷ୍ଣୁ କହିଲେ, "ଲକ୍ଷ୍ମୀ ତାଙ୍କ ଅଭ୍ୟାସ

ଯୋଗୁ ଭିତରକୁ ଚାଲିଗଲେ । ସେଥିରେ ତୁମର ଦୁଃଖ କରିବାର କିଛି ନାହିଁ । କିନ୍ତୁ ତୁମେ ଯେ କହୁଛ, ସମସ୍ତ ଇନ୍ଦ୍ରିୟ ଉପରେ ତୁମେ ବିଜୟ ଲାଭ କରିଛ, ତାହା କେତେଦୂର ସତ୍ୟ ? ଯେତେବେଳେ ମାୟା କବଳରେ ପଡ଼ିବ, ସେତେବେଳେ ଏ ଦମ୍ଭ ରହିବ କି ?"



ନାରଦ ଟିକିଏ ବିସ୍ମିତ ହୋଇ କହିଲେ, "ପ୍ରଭୁ ! ଆପଣ କ'ଣ କହୁଛନ୍ତି ମାୟା ଏତେ ଶକ୍ତିଶାଳୀ ? ମୋତେ ଟିକିଏ ତା'ର ପ୍ରମାଣ ଦେଇପାରିବେ ?"

"ଯଦି ପ୍ରମାଣ ଚାହ, ତେବେ ମିଳିବ ।" ବିଷ୍ଣୁ କହିଲେ । ସେ ଗରୁଡ଼କୁ ଡାକିଲେ ଓ ଦୁହେଁ ଗରୁଡ଼ବାହନ ଯୋଗେ ଦୂରବର୍ତ୍ତୀ କାନ୍ୟକୁବ୍ଜ ଦେଶର ଗୋଟିଏ ଅଞ୍ଚଳରେ ପହଞ୍ଚିଲେ । ସେଠାରେ ଦେଖାଗଲା ପଦ୍ମ-ଶୋଭିତ ଗୋଟିଏ ସୁନ୍ଦର ସରୋବର । ବିଷ୍ଣୁ ନାରଦଙ୍କୁ କହିଲେ, "ତୁମେ ଏ ସରୋବରରେ ସ୍ନାନ କର । ତା'ପରେ ଆମେ ନଗରୀ ଭିତରକୁ ଯିବୁ ।"

ନାରଦ ନିଜ ବୀଣାଟି ଖଣ୍ଡିଏ ପଥର ଉପରେ ଥାପି ସରୋବର ଭିତରେ ପ୍ରବେଶ କଲେ । ସେ ଗୋଟିଏ ବୁଡ଼ ପକାଇ ଉଠିବା ବେଳକୁ ସବୁ ଭୁଲିଯାଇଥାନ୍ତି । ବିଷ୍ଣୁ ବି ସେଠାରୁ ଅଦୃଶ୍ୟ ହୋଇଯାଇଥାନ୍ତି ।

ସେ କିଏ, କିପରି ସେଠାକୁ ଆସିଲେ, ନାରଦ ଏସବୁ କଥା ଭାବୁଛନ୍ତି, ଜଣେ ରାଜା ରଥାରୋହଣ କରି ସେଠାରେ ପହଞ୍ଚିଲେ । ସେ ରଥରୁ ଅବତରଣ କରି ନାରଦଙ୍କ ଆଡ଼କୁ ଅଗ୍ରସର ହୋଇ ମଧୁର କଣ୍ଠରେ ପଚାରିଲେ, "ହେ ସୁନ୍ଦରୀ, ତୁମେ କିଏ ? ମାନବୀ ନା ଅପ୍ସରା ? କାହା ପ୍ରତୀକ୍ଷାରେ ଏଠାରେ ରହିଛ । ମନେ ହୁଏ, ତୁମେ ଅବିବାହିତା । ଏଠାକୁ ତୁମକୁ ଆଣିଲା କିଏ ?"

ନାରଦ ବୁଝିଲେ ଯେ ସେ ଜଣେ ସୁନ୍ଦରୀ ନାରୀ । କିନ୍ତୁ ଆଉ କିଛି ସେ ମନେ ପକାଇ ପାରିଲେ ନାହିଁ ।

କ୍ରମେ ନାରୀ ସୁଲଭ ଲଜ୍ଜାରେ ତାଙ୍କ ମସ୍ତକ ଅବନତ ହେଲା । ସେ ନୀରବରେ ମୃଦୁ ହସି ଠିଆହୋଇ ରହିଲେ । ଯେତେ ଚେଷ୍ଟା କଲେ ମଧ୍ୟ ଆଉ କିଛି ମନେ ପକାଇ ପାରିଲେ ନାହିଁ ।

ରାଜା ପୁଣି ଥରେ ତାଙ୍କୁ ଏକା ପ୍ରଶ୍ନ କଲେ । କିନ୍ତୁ ଉତ୍ତର ପାଇଲେ ନାହିଁ ।

ରାଜା ଅନୁମାନ କଲେ କୌଣସି ଅପ୍ସରା କାହାର ଅଭିଶାପ ଯୋଗୁ ମାନବରୂପ ପାଇ ସେଠାକୁ ନିର୍ବାସିତା ହୋଇଛି ଓ ସେହି ଅଭି-ଶାପ ଯୋଗୁହିଁ ନିଜର ପୂର୍ବ କଥା ପାଶୋରି-ଦେଇଛି ।

ସେ ସାଦରେ ସୁନ୍ଦରୀଙ୍କୁ ନଗରକୁ ନେଇଗଲେ ଓ ତାଙ୍କୁ ବିବାହ କଲେ । ସୁଖରେ ଉଭୟଙ୍କ ସମୟ କଟିଯିବାକୁ ଲାଗିଲା । ବର୍ଷ ବର୍ଷ ବିତିଗଲା । ସୁନ୍ଦରୀ ରାଣୀ କ୍ରମେ ବାରଗୋଟି ସନ୍ତାନ ଜନ୍ମ ଦେଲେ । ସେମାନେ ମଧ୍ୟ ବଡ଼ ହୋଇ ବିବାହ କଲେ ଓ କ୍ରମେ ସେମାନଙ୍କର ମଧ୍ୟ ଅନେକଗୁଡ଼ିଏ ସନ୍ତାନ-ସନ୍ତତି ହେଲେ ।

ଦିନ ସୁଖରେ ବିତି ଯାଉଥିଲା । ହଠାତ୍ ଦିନେ ଶତ୍ରୁପକ୍ଷ ସେ ରାଜ୍ୟ ଆକ୍ରମଣ କରି ସବୁ ଛାରଖାର କରିଦେଲେ । ରାଣୀଙ୍କ ଆଗରେ ତାଙ୍କର ପୁତ୍ର ପୌତ୍ରଗଣ ମଲେ । ଭୀଷଣ ଦୁଃଖରେ ରାଣୀ ପଳାଇଯାଇ ସରୋବରକୁ ଡେଇଁପଡ଼ିଲେ ।

କିନ୍ତୁ ହଠାତ୍ ତାଙ୍କର ମନେ ହେଲା ସବୁ କିଛି ସ୍ୱପ୍ନ । ସେ ମୁଣ୍ଡଟୋଳ ପାଣିରେ ନିଜର ପ୍ରତିବିମ୍ବ ଦେଖିଲେ । ସେ ଯେ ନାରଦ, ତାଙ୍କର ତାହା ମନେ ପଡ଼ିଲା । ସେ ଉପରକୁ ଉଠିଆସି ଦେଖିଲେ ତାଙ୍କ ବୀଣା ଯେଉଁଠାରେ ଥିଲା ସେହି-ଠାରେ ଅଛି । ବିଷ୍ଣୁ ବି ଅପେକ୍ଷା କରିଛନ୍ତି ।

"ନାରଦ ! ତୁମେ ବଡ଼ ବିଳମ୍ବ କଲ !" ବିଷ୍ଣୁ ମୃଦୁହସି କହିଲେ ।

"ହେ ଭଗବାନ ! ମାୟା କ'ଣ ବୁଝିଲି ।" ନାରଦ ଦୀର୍ଘଶ୍ୱାସ ଛାଡ଼ି କହିଲେ ।



# ମଧ୍ୟରାତ୍ରର ଏକତା

ବେପାରୀ ମୋତିଲାଲଙ୍କର ଦୁଇ ସ୍ତ୍ରୀ ଥିଲେ । ଦୁହେଁ ସବୁବେଳେ ଝଗଡ଼ା କରୁଥାନ୍ତି ।

ମୋତିଲାଲ୍ ସେ ଦୁହିଁଙ୍କ ଭିତରେ କିପରି ଏକତା ଆଣିବେ, ତା'ର ଏକ ଉପାୟ ପାଞ୍ଚିଲେ । ସେ ଦିନେ ସହରକୁ ଯିବା-ବାହାନାରେ ଘରୁ ବାହାରିଗଲେ । କିଛିଦୂର ଯାଇ ରାତି ହେବା ମାତ୍ରେ ସେ ଦାଢ଼ି ଲଗାଇ, ପାଗ ଭିଡ଼ି ଡାକୁ ଭଳି ସାଜିହୋଇ ମଧ୍ୟରାତ୍ରିରେ ନିଜ ଘରକୁ ଆସି କବାଟ ବାଡ଼େଇଲେ । ଦୁଇପତ୍ନୀ ଝରକା ଦେଇ ଗୁଣ୍ଡାକୁ ଦେଖି ଡରିଗଲେ । "ମୋତେ ଭାରି ଡରଲାଗୁଛି !" କହିଲା ସାନ ସ୍ତ୍ରୀ । "ଆରେ, ଯାହା ହେବ, ତୋର୍ ମୋର ଦୁହିଁଙ୍କର ହେବ !" ଏହା କହି ବଡ଼ ସ୍ତ୍ରୀ ସାନ ସ୍ତ୍ରୀକୁ କୁଣ୍ଢାଇପକାଇଲା । "କବାଟ ଖୋଲିବ ନା ମରିବ ?" ଧମକ ଦେଲେ ଛଦ୍ମବେଶୀ ମୋତିଲାଲ୍ ।

ଦୁଇ ସ୍ତ୍ରୀ ଜୀବନକୁ ପାଣି ଛଡ଼ାଇ ପରସ୍ପର ଭିଡ଼ାଭିଡ଼ି ହୋଇ ଗାବଲ ଉଠାଇ କହିଲେ, "ଆ ବଦମାସ, ମରିବୁ । ଆମ ଘରେ ବନ୍ଧୁକ ଅଛି ବୋଲି ଜାଣିଲୁ ପରା !"

ମୋତିଲାଲ୍ ପଳାଇଗଲେ । ଯିବାବେଳେ ଶହେ ଟଙ୍କାର ଗୋଟାଏ ଥଳି ଜାଣି କରି ପକାଇ-ଦେଇଗଲେ । ଏକମନ ହୋଇ କାମ କରି ଏତକ ପାଇଲେ ବୋଲି ଦୁଇ ସ୍ତ୍ରୀ ଭାବିବେ ଓ ଚିରଦିନ ସେମିତି ରହିବେ, ଏଇଆ ଥିଲା ଆଶା ।

ପରଦିନ ସେ ଫେରି ଆସି ଦେଖନ୍ତି, ଦୁଇ ସ୍ତ୍ରୀ ଭିତରେ ଭୀଷଣ ଝଗଡ଼ା । ଜଣେ କହୁଛି, "ମୋ ଯୋଗୁ ଡାକୁ ଅତଙ୍କ'ରେ ଟଙ୍କା ପକାଇ ପଳାଇଲା !" ଆଉ ଜଣକ କହୁଛି, "ମୋ ଯୋଗୁ !"





# ପିଶାଚୁଣୀର ଉପଦ୍ରବ

ଧର୍ମପୁର ଗାଁ ଉପକଣ୍ଠରେ ଗୋଟାଏ ପୁରୁଣା ଘର ପଡ଼ିଥାଏ । ସେଥିରେ ଅନେକଦିନରୁ କେହି ବସବାସ କରୁ ନ ଥିଲେ । ଘର ଆଗରେ ଥାଏ ଗୋଟାଏ ବିରାଟ ବରଗଛ । ସ୍ଥାନଟି ନିହାତି ନିର୍ଜନ ।

ସେ ଘରେ ଗୋଟିଏ ପିଶାଚୁଣୀ ରହୁଥାଏ ବୋଲି ଲୋକେ ବିଶ୍ୱାସ କରୁଥାନ୍ତି । ରାତିରେ ସେ ରାସ୍ତାଦେଇ ଯିବାବେଳେ ଲୋକେ ଘର ଭିତରୁ କାଚ ଓ ଘୁଙ୍ଗୁର ରୁଣୁଝୁଣୁ ହେବାର ଶୁଣିପାରୁଥିଲେ । ତାହାଠାରୁ ବଡ଼ ପ୍ରମାଣ ଆଉ କ'ଣ ହୋଇପାରେ ?

ଥରେ ଗାଁର ତିନିଜଣ ସାହସୀ ଯୁବକ ସେ ଘରେ ରାତି ବିତାଇବା କଥା ଠିକ୍ କରି ତା' ଭିତରେ ପଶିଲେ । କିନ୍ତୁ ଅନ୍ଧକାର କୋଣରୁ ସେମାନଙ୍କ ଉପରେ ମାଡ଼ ବସିଲା । "ପିଶାଚୁଣୀର ତାକତ କମ୍ ନୁହେଁ !" କହି ସେମାନେ ପ୍ରାଣ-ବିକଳରେ ପଳାଇଆସିଲେ ।

ଦିନେ ଜଣେ ଯୁବକ ଆସି ସେ ଗାଁରେ ପହଞ୍ଚିଲା । ସେ କହିଲା, "ମୁଁ ଶୁଣିଛି ତୁମ ଗାଁ ବାହାରେ ଗୋଟାଏ ଘରେ ପିଶାଚୁଣୀ ରହେ । ମୁଁ ଭୂତପ୍ରେତ ଦେଖିବାକୁ ଖୁବ୍ ଆଗ୍ରହୀ । ଏହା କହି ସେ ବରଗଛ ଚଢ଼ି ବସିଲା । ସକାଳେ ସେ ଗାଁ ଲୋକଙ୍କୁ କହିଲା, "ବାସ୍ତବିକ ସେ ଘରେ ପିଶାଚୁଣୀ ଅଛି । ମୁଁ ଅବଶ୍ୟ ଦେଖିପାରିଲି ନାହିଁ । କିନ୍ତୁ ରୁଣୁଝୁଣୁ ଶବ୍ଦ ଶୁଣିଲି । ପିଶାଚୁଣୀ ନ ହେଲେ ସେଭଳି ଶବ୍ଦ କରିବ କିଏ ?" ଲୋକେ ତା' କଥାକୁ ସମର୍ଥନ କଲେ ।

ଯୁବକଟି ସହରକୁ ଚାଲିଗଲା । ତା'ର ପ୍ରାୟ ସପ୍ତାହକ ପରେ ଦଳେ ଯାଦୁକାର ଆସି ସେ ଗାଁରେ ପହଞ୍ଚିଲେ । ସେମାନେ ବରଗଛ ତଳେ ଡେରା ପକାଇଲେ ଓ ରାତିରେ ପୁତୁଳା ନାଚ ଦେଖାଇବେ ବୋଲି ଘୋଷଣା କଲେ ।

ଗାଁର ଭଦ୍ରଲୋକମାନେ ତାଙ୍କୁ କହିଲେ, "ସେ ଗଛ ପାଖରେ ପିଶାଚୁଣୀ ରହେ । ତେଣୁ

ଗୋବିନ୍ଦ

ସେଠାରେ ଖେଳ ଦେଖାଇବା ଉଚିତ ହେବ ନାହିଁ ।"

ଖେଳଦଳର ଅଧିକାରୀ କହିଲେ, "ଚିନ୍ତା କରନ୍ତୁ ନାହିଁ । ଆମ ଖେଳରେ ବୀର ହନୁମାନ୍ ବାହାରିବେ । ହନୁମାନ୍‌ଙ୍କ ଅଭିନୟ ହେଲେ ବା ତାଙ୍କ ନାମ ପଡ଼ିଲେ ଭୂତପ୍ରେତ ପିଶାଚ ସମସ୍ତେ ପଳାଇଯାନ୍ତି । ସେଇଠାରେ ଆମ ଖେଳ ଠିକ୍ ଜମିବ ବୋଲି ଆମର ବିଶ୍ୱାସ ।

"ନା, ନା, ସେଠାରେ ଖେଳ ହେଲେ ଆମ ଲୋକେ ଦେଖିବାକୁ ଯିବେ ନାହିଁ ।" ଭଦ୍ର-ଲୋକମାନେ କହିଲେ ।

"ଆମେ ବଡ଼ ଦୁଃଖିତ । ଆମର ନିୟମ ହେଲା, ଯେଉଁଠାରେ ଖେଳ ଦେଖାଇବୁ ବୋଲି ଥରେ ଆମେ ସ୍ଥିର କରିପକାଉ, ଯେତେ ବାଧା-ବିଘ୍ନ ହେଲେ ବି ସେଇଠାରେହିଁ ଆମେ ଖେଳ ଦେଖାଇଥାଉ । ଗୋଟିଏ କଥା ଭାବି ଦେଖନ୍ତୁ, ଆମେ ଯେତେବେଳେ ଡରୁନାହୁଁ, ଆପଣମାନେ କାହିଁକି ଡରିବେ ?"

ଭଦ୍ରଲୋକମାନେ ଏ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଇପାରିଲେ ନାହିଁ ।

ରାତି ହେବାରୁ ବାଦ୍ୟ ସହଯୋଗେ ଖେଳ ଆରମ୍ଭ ହେଲା । ଗାଁର କିଛି ଲୋକେ ସାହସ ବାନ୍ଧି ଖେଳ ଦେଖିବାକୁ ଆସିଲେ । କିନ୍ତୁ ଖେଳ ଠିକ୍ ଆରମ୍ଭ ହୋଇଛି, ମଞ୍ଚ ଉପରେ ଯାଇ ଖଣ୍ଡିଏ ହାଡ଼ ପଡ଼ିଲା ।

ସେତିକରେ ଅଧାଅଧି ଦର୍ଶକ ସ୍ଥାନ ଛାଡ଼ି ପଳାଇଗଲେ । ଅନ୍ୟମାନେ ଦୂରକୁ ଯାଇ ଠିଆ-



ହେଲେ । ଏବଂ ଘଟଣା ଲକ୍ଷ୍ୟ କଲେ ।

ଖେଳ ପ୍ରଦର୍ଶନକାରୀମାନେ ହନୁମାନ୍‌ଙ୍କ ମୂର୍ତ୍ତି ବାହାର କଲେ । ତଥାପି ହାଡ଼ ଆସି ପଡ଼ିଲା ।

"ବୁଝିଲୁ । ଏ ପିଶାଚ ଡରିବା ପିଶାଚ ନୁହେଁ, ଡରାଇବା ପିଶାଚ ! କିନ୍ତୁ ଆମେ ବି ଡରିବା ଲୋକ ନୋହୁଁ । ଭାଇମାନେ, ଚାଲ, ଏ ଘରକୁ ଦଖଲ କରି ଆମେ ରହିବା ।" ଅଧିକାରୀ କହିଲେ ।

ଯେମିତି ସେମାନେ ଘର ପିଣ୍ଡାକୁ ଉଠିଛନ୍ତି, ସେମିତି ପାଞ୍ଚ ଛଅଜଣ ମୋଟା ବଳୁଆ ଲୋକ ବାହାରି ଆସି ସେମାନଙ୍କୁ ବାଧା ଦେଲେ । "ଆମେ ପିଶାଚୁଣୀର ସେବକ । ପିଶାଚୁଣୀକୁ ଚିଡ଼ାଇବ, ତୁମର ଏତେ ବହପ ।" ସେମାନେ ଯାତ୍ରାକାରୀ ଦଳକୁ ଧମକ ଦେଲେ ।

ସଙ୍ଗେସଙ୍ଗେ ଯାତ୍ରାକାରୀମାନେ ପିଶାଚୁଣୀର ସେବକଙ୍କ ଉପରକୁ ଡେଇଁପଡ଼ି ସେମାନଙ୍କୁ କାବୁ କରିବାକୁ ଚେଷ୍ଟା କଲେ । କିନ୍ତୁ ସମୟ ସକାଶେ ଲଢ଼େଇ ହେଲା । ତେବେ ପିଶାଚୁଣୀର ସେବକମାନେ ଏଭଳି ପରିସ୍ଥିତି ସକାଶେ ପ୍ରସ୍ତୁତ ନ ଥିଲେ । ତା' ଛଡ଼ା ଯାତ୍ରାକାରୀ ଦଳର ବଳୁଆ ଲୋକଙ୍କ ସଂଖ୍ୟା ଥିଲା ଅଧିକ । ତେଣୁ ସେବକମାନେ କାବୁ ହୋଇଗଲେ । ସେମାନଙ୍କୁ ଯାତ୍ରାକାରୀମାନେ ବାନ୍ଧିପକାଇଲେ ।

ତା'ପରେ ଯାତ୍ରାକାରୀମାନେ ଘର ଭିତରେ ପଶିଲେ । ଗୋଟାଏ କୋଠରୀରେ ଧୂଙ୍କୁର ଓ ଚୂଡ଼ି ପଡ଼ିଥିବାର ସେମାନେ ଦେଖିଲେ ।

ପିଶାଚୁଣୀ ଓ ତା' ସେବକମାନଙ୍କ ରହସ୍ୟ ଜଣାପଡ଼ିଗଲା । ସେ ଗାଁର ଓ ପାଖ ଗାଁର ଦୁଇ ତିନିଜଣ ଧୂର୍ତ୍ତ ଲୋକେ କେତେଜଣ ଗୁଣ୍ଡାଙ୍କୁ ହାତରେ ରଖି ନାନା ଅବୈଧ ଓ ବେଆଇନ କାମ କରୁଥାନ୍ତି । ସେମାନଙ୍କର ସେସବୁ କାମର କେନ୍ଦ୍ରସ୍ଥଳ ଥିଲା ସେହି ଘର ।

କହିବା ବାହୁଲ୍ୟ, ସେ ଯାତ୍ରାକାରୀମାନେ ଥିଲେ ଏକ ଛଦ୍ମବେଶୀ ପୋଲିସ୍‌ବାହିନୀ । ଅଧିକାରୀ ଥିଲେ ଜଣେ ବରିଷ୍ଠ କର୍ମଚାରୀ । ପୂର୍ବରୁ ଯେଉଁ ଯୁବକଟି ସାବରିଭ ଗଛ ଚଢ଼ି ପରିସ୍ଥିତି ଲକ୍ଷ୍ୟ କରିଯାଇଥିଲା, ସେ ପୋଲିସ୍ ବିଭାଗର ଜଣେ ଗୁପ୍ତଚର ।

ଘର ଖାନ୍‌ତଲାସ ହେଲା । ସେଥିରୁ ଅନେକ ଚୋରିମାଲ୍ ଓ ମଦ ବାହାରିଲା । କିଛି ଅସ୍ତ୍ରଶସ୍ତ୍ର ମଧ୍ୟ ଜବଦ ହେଲା । ସେ ଧୂର୍ତ୍ତ ଦଳର ସମସ୍ତେ ଗିରଫ ହେଲେ ।

ଗାଁଲୋକେ ସେ ପରିତ୍ୟକ୍ତ ଘରକୁ ମରାମତି କରି ସେଠାରେ ଗୋଟିଏ ପାଠାଗାର ଓ ଆଗରେ ଗୋଟାଏ ଖେଳପଡ଼ିଆ ପ୍ରସ୍ତୁତ କଲେ । ପୂର୍ବକଥା ମନେ ପକାଇ ନିଜ ନିଜର ଭୀରୁଭାବ ଯୋଗୁ ଗାଁଲୋକେ ଏବେ ବି ଲଜ୍ଜା ଅନୁଭବ କରନ୍ତି ।



# ତିନିପ୍ରକାର

ଦେବଗିରିରେ ଥିଲେ ତିନି ଭାଇ । ସେମାନେ ଯେ କୌଣସି କାମକୁ ତିନି ପ୍ରକାରେ କରିପାରୁଥିଲେ ବୋଲି ସେମାନଙ୍କର ଖ୍ୟାତି ଥିଲା ।

କାଞ୍ଚିପୁରର ରାଜା ସେମାନଙ୍କୁ ଡକାଇପଠାଇଲେ । ଏକ ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଦିଷ୍ଟ ସମୟରେ ଦରବାରରେ ପହଞ୍ଚିବାକୁ ସେ ତିନିଜଣଙ୍କୁ ନିର୍ଦ୍ଦେଶ ଦେଲେ । ତିନିହେଁ ଏକ ସମୟରେ ଦରବାରରେ ପହଞ୍ଚିଲେ ସେମାନେ ଯେ କାମଟିକୁ ତିନି ପ୍ରକାରେ କରିନାହାନ୍ତି, ରାଜା ଏଇକଥା ଦର୍ଶାଇଦେବାକୁ ଚାହୁଁଥିଲେ ।

ତିନିଭାଇ ଠିକ୍ ସମୟରେ ପହଞ୍ଚିଲେ । କିନ୍ତୁ ଦରବାରର ତିନି ପ୍ରବେଶପଥ ଦେଇ ଅଲଗା ଅଲଗା ତିନିଜଣ ଭିତରେ ପଦାର୍ପଣ କଲେ ।

ଜଣେ ପରିଚାରକ ସେମାନଙ୍କୁ ତିନିଗିଲାସ ପାଣି ଦେଲା । ଜଣେ ତତ୍କ୍ଷଣାତ୍ ଢକଢକ ପିଇଦେଲା । ଆଉ ଜଣେ ସ୍ୱାଭାବିକ ରୀତିରେ ପିଇଲା । ତୃତୀୟ ଜଣକ ଧୀରେ ଧୀରେ ପନ୍ଦର ମିନିଟରେ ପାଣିତକ ଶେଷ କଲା । ପିଇସାରି ଜଣେ ଗିଲାସକୁ ସାଧାରଣ ଭାବରେ ଧରିଲା; ଅନ୍ୟ ଜଣକ ମୁହଁ ତଳକୁ କରି ଧରିଲା; ତୃତୀୟ ଜଣକ ତାକୁ ଶୁଆଇ ଧରିଲା ।

ରାଜା ଦେଖିଲେ ତିନିଭାଇ ବାସ୍ତବିକ ଏକ କାମକୁ ତିନି ପ୍ରକାରେ କରିବାରେ ବେଶ୍ ଦକ୍ଷତା ଅର୍ଜନ କରିଛନ୍ତି । ଏହି ପାର୍ଥକ୍ୟ ସେମାନଙ୍କ ଏକତାହିଁ ସୂଚିତ କରୁଥିଲା । ତେଣୁ ସେ ସେମାନଙ୍କୁ ପୁରସ୍କାର ଦେଇ ବିଦାୟ ଦେଲେ ।



## ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

### ପୁରସ୍କୃତ ପରିଚୟୋକ୍ତି ନଭେମ୍ବର ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ







★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ସେପ୍ଟେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲଡିଙ୍ଗ୍ସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

### ଜୁଲାଇ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : ଖେଳସାଥୀ ପାଶେ ବିନା, ନାହିଁ କିଛି ଖେଳନା,

ଦ୍ୱିତୀୟ ଫଟୋ : ଖେଳନା ମୋ ହାତେ ହାତେ, ଖେଳସାଥୀ ପାଏନା ।

ପୁରସ୍କାର ବିଜେତା : ନିହାର ରଞ୍ଜନ ତ୍ରିପାଠୀ, ଭୁବନେଶ୍ୱର ।

ବିଜେତାଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

## मुफ्त ! मुफ्त !! मुफ्त !!!

"मेरी गोल्ड कवरिंग" ने सम्पूर्ण भारत में बहुत नाम कमाया है। हमारी कम्पनी भारत की सभी कम्पनियों में बहुत बड़ी है। पन्द्रह साल की कोशिश और तजुर्बे के बाद ही हमारी कम्पनी को पांच साल की गेरन्टी का माल बनाने में सफलता प्राप्त हुई है।

हमारे बहुमूल्य केटलाग को जिसमें हमारे आभषणों की सम्पूर्ण सूची तथा उनके मूल्य अंकित हैं आप घर बैठे मुफ्त में मंगा सकते हैं। सम्पूर्ण भारत में अनुभवी एजैन्टों की आवश्यकता है।




# MERI GOLD COVERING WORKS

P.O. BOX 1405, 14, RANGANATHAN STREET
T. NAGAR MADRAS-600 017 INDIA

# ଆଖି ବୁଜିଲେହିଁ ଇଚ୍ଛା ପୂରଣ...



ଟଙ୍କା ଯେତେ ଜମାଇବ ସେତେ ତ ଇଚ୍ଛା ପୂରଣ ହେବ ! ତୁମର କଣ ଦରକାର ? ସାଇକେଲ ? କଣ୍ଢେଇ ଘର ? ନା ଗୋଟିଏ ନୂଆ କ୍ୟାମେରା ? ଯେ ଯାହା ହେଉନା କାହିଁକି ତାକୁ ତ ତୁମେ ନିଜ ଟଙ୍କାରେ କିଣି ପାରିବ । କାନାଡ଼ା ବ୍ୟାଙ୍କର **ବାଳକ୍ଷେମ ଡିପୋଜିଟ** ପ୍ରକଳ୍ପ ତ ତୁମମାନଙ୍କ ପାଇଁହିଁ ଉଦ୍ଦିଷ୍ଟ । ସୁନ୍ଦର ଦିଶୁଥିବା ଏହି ବାଳକ୍ଷେମ ହୋମ୍ ସେଭିଙ୍ଗ୍ସ ବାକ୍ସରେ ମନ ଖୁସିରେ ଖୁଚୁରା ପଇସା ଜମାଇ ଯାଅ । ଭର୍ତ୍ତି ହୋଇଗଲେ କାନାଡ଼ା ବ୍ୟାଙ୍କର ଶାଖାରେ ଜମାଦେଇ ପୁଣି ନୂଆ କରି ଜମାଇବା ଆରମ୍ଭ କର । ଦେଖିବ, ତୁମର ଜମା ଟଙ୍କା କିପରି ବଢ଼ି ଯାଉଛି—କାରଣ ତା' ସହିତ ଆମେ ତ ସୁଧ ଦେଇ ଟଙ୍କା ତୁମକୁ ଦେବୁ, ସେଥିପାଇଁ । ଦେଖିବ ଶୀଘ୍ର ମନମୁତାବକ ଜିନିଷ କିଣିବାର ଟଙ୍କା ତୁମେ ପାଇ ଯାଉଛ ।

ଦେଖିଲ ତ—ଇଚ୍ଛା ପୂରଣର ଉପାୟ କେତେ ମଜାଦାର ! ତା' ଛଡ଼ା ଛୋଟବେଳେ ଏ ଟଙ୍କା କିପରି ଜମାଇବାକୁ ହୁଏ ତାହାତ ଶିଖିଗଲ, ବୁଝିଲ ତ ?

ଜୀବନ ଗଢ଼ିବା ପାଇଁ କାନାଡ଼ା ବ୍ୟାଙ୍କର ଜନକଲ୍ୟାଣକାରୀ ଯୋଜନାଗୁଡ଼ିକ ଏକ ସୁଯୋଗ । ଅନେକ ଆକର୍ଷଣୀୟ ବିଶେଷ ପ୍ରକଳ୍ପ ମଧ୍ୟରେ ରହିଛି କାମଧେନୁ, ବିଦ୍ୟାନିଧି ଓ ଜନନୀ ।

## ବାଳକ୍ଷେମ ଡିପୋଜିଟ




## କାନାଡ଼ା ବ୍ୟାଙ୍କ




(ଏକ ରାଷ୍ଟ୍ରାୟତ୍ତ ବ୍ୟାଙ୍କ)

ସାରା ଦେଶରେ ଏହି ବ୍ୟାଙ୍କର ୧୨୦୦ ରୁ ଅଧିକ ଶାଖା ରହିଛି

everest/80/PP/333-or




# କୁନି ଟୁଆଙ୍କ ହସେ ହସିଉଠେ ଘର ।

ଦିଅନ୍ତୁ ତାଙ୍କୁ ସ୍ନେହ ମମତାରେ ଭରା




## ପାର୍ଲେ ଗ୍ଳୁକୋ
## ସ୍ୱାଦ ମଧୁର
## ଶକ୍ତିରେ ଭରପୂର

ଦୁଧ, ଗହମ, ଶର୍କରା ଓ ଗ୍ଳୁକୋଜର
ଶକ୍ତିଦାୟକ ତତ୍ତ୍ୱରେ ଭରପୂର



ୱାର୍ଲ୍ଡ-ସିଲେକ୍ସନ
ପାରିତୋଷିକ ବିଜେତା ।




**ଗ୍ଳୁକୋ** ଭାରତର ସବୁଠାରୁ ବେଶି ବିକ୍ରୀ ହେଉଥିବା ବିସ୍କୁଟ